

KORAPUT REGION IN ORISSA
SHOWING DEVELOPMENT BLOCKS
RAIGARH
CHANDAHANDI
UMARKOT
JHORIGAM
KALAHANDI
DABUGAM
PAPADAHANDI
TENTULI KHUNTI
KOSAGUMUDA
NOWARANGPUR
NANDAHANDI
KOTPAD
BORIGUMMA
DASAMANTAPUR
KUNDRA
JEYPORE
KORAPUT
NARAYANPATNA
SEMILIGUDA
POTANGI
BOIPARIGUDA
MATHILI
KHAIRAPUT
LAMTAPUT
NANDAPUR
MALKANGIRI
PODIA
KORUKUNDA
KALIMELA
KUDUMULGUMMA
KASHIPUR
KALYANSINGPUR
BISSAMCUTTACK
GUNUPUR
CHANDRAPUR
GUDARI
PADMAPUR
KOLNARA
RAYAGADA
RAMNAGUDA
GUNPUR
LAKSHMIPUR
GANJAM
MADHYA PRADESH
ANDHRA PRADESH
SCALE IN KMS
9 0 8 16 24
N
S
NOWARANGPUR DIST. HQ.
MALKANGIRI DIST. HQ.
RAYAGUDA DIST. HQ.
KORAPUT DIST. HQ.
INDEX
UN DEVIDED KORAPUT DISTRICT BOUNDARY
DISTRICT BOUNDARY
BLOCK
DISTRICT HEAD QUARTERS
SUB-DIVISION H.Q.R.S
HIGH WAY
RAILWAY
SUB-DIVISION BOUNDARY

# ଜୟପୁର


* ଲେଖକ

୰ କବିବର ଚିନ୍ତାମଣି ମହାନ୍ତି ।

* ପ୍ରକାଶକ

ଶ୍ରୀ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ।
ତରଫେ—ଶାବର ସଂସ୍କୃତି ଗବେଷଣାକେନ୍ଦ୍ର ।
ଶ୍ରୀ ଜଗନ୍ନାଥ ମନ୍ଦିର ପ୍ରକଳ୍ପ
ଶାବର ଶ୍ରୀକ୍ଷେତ୍ର : କୋରାପୁଟ (ଓଡ଼ିଶା)

* ମୁଦ୍ରଣ

ମଙ୍ଗଳ ପ୍ରିଣ୍ଟର୍ସ, କୋରାପୁଟ

* ପ୍ରକାଶନ

୧୯୯୬, ଜାନୁୟାରୀ ପହିଲା ।

* ମୂଲ୍ୟ

ଶୋଭନ- ଟ Rs. 75/-
ବନ୍ଧେଇ- ଟ [illegible]
(ଲାଇବ୍ରେରୀ ସଂସ୍କରଣ)


## JAYAPUR


* **Author**

୰ Kabibara Chintamani Mohanty

* **Publisher**

Sri Krushna Chandra Panigrahi
Care-Sabara Calture Research centre.
Sri Jagannath Temple Complex
Sabara Srikhetra,
KORAPUT-764020, Orissa.

* **Printer**

Mangal Printers, Koraput.

* **Published on**

1st January, 1996

* **Cost**

Paper back- Rs [illegible]
Library Edition- Rs [illegible]

# ପ୍ରାକ୍ କଥନ

ଅଶୋକଙ୍କ ଜଉଗଡ ଶିଳାଲେଖରୁ କଳିଙ୍ଗକାନନର ଅରଣ୍ୟବାସୀଙ୍କ ଉଦ୍ଦେଶ୍ୟରେ ସ୍ୱତନ୍ତ୍ର ନିର୍ଦ୍ଦେଶ ଲିପିବଦ୍ଧ ହୋଇଥିବା ଜଣାଯାଏ । ଏହି କଳିଙ୍ଗକାନନ ବା କଳିଙ୍ଗବନ ବର୍ତ୍ତମାନର କୋରାପୁଟ, ବା ପୂର୍ବତନ ଜୟପୁର ଜମିଦାରୀ, କାଶୀପୁର ଜମିଦାରୀ, ପାରଳାଖେମୁଣ୍ଡି ଓ ଗଞ୍ଜାମ ମାଳ, କନ୍ଧମାଳ, କଳାହାଣ୍ଡିର ମାଳ ଏବଂ ଆନ୍ଧ୍ରର ମାଳ ଅଞ୍ଚଳ ପାଇଁ ପ୍ରଯୁଜ୍ୟ । ପୁରାଣରେ ଏହି ଅଞ୍ଚଳ ମହାକାନ୍ତାର ରୂପେ ପରିଚିତ ଏବଂ ଏଠାକାର ଅଧିବାସୀଙ୍କୁ ଆଟବିକ କୁହାଯାଇଛି । ଏହି ଅଞ୍ଚଳ ଆଟବିକ ରାଜ୍ୟ ରୂପେ ମଧ୍ୟ ନାମିତ । ଏହି ପୁରାଣ ଓ ଇତିହାସ ପ୍ରସିଦ୍ଧ ଅଞ୍ଚଳର ବହୁଳାଂଶକୁ ନେଇ ପ୍ରାଚୀନ ଜୟପୁର (ନନ୍ଦପୁର) ରାଜ୍ୟ ଏବଂ ପରବର୍ତ୍ତୀ ଜୟପୁର ଜମିଦାରୀ ଓ ସାଂପ୍ରତିକ କାଳର କୋରାପୁଟ ।

ଏ ଅଞ୍ଚଳର ସାଂସ୍କୃତିକ ତଥା ଐତିହାସିକ ତଥ୍ୟ ସଂଗ୍ରହ କରିବା ସମୟରେ ଅନେକେ ବ୍ରିଟିଶ୍ ଶାସନ କାଳରେ ସଂକଳିତ ଗେଜେଟିୟର ଗୁଡ଼ିକରେ ପରିବେଷିତ ବିଷୟବସ୍ତୁକୁ ହିଁ ପ୍ରାମାଣିକ ଭାବେ ଗ୍ରହଣ କରିଥାନ୍ତି । ଇଂରେଜମାନେ ଏ ଅଞ୍ଚଳ ମଧ୍ୟକୁ ପ୍ରବେଶକରି ରାଜନୈତିକ ଦୃଷ୍ଟିକୋଣରୁ ହିଁ ଏ ଅଞ୍ଚଳ ଉପରେ ଲେଖା, ରିପୋର୍ଟ ଇତ୍ୟାଦି ପ୍ରସ୍ତୁତ କରିବା ଆରମ୍ଭ କରିଥିଲେ । ସ୍ୱାଧୀନତା ପ୍ରାପ୍ତିପରେ ଗବେଷଣାର ଅନ୍ତନାହିଁ । କିନ୍ତୁ ଗବେଷକଗଣ ବିଶେଷ କିଛି ନୂତନ ତଥ୍ୟ ପାଇଁ ଗବେଷଣାରତଥିବା ଦେଖା ଯାଉନାହିଁ । ଓଡ଼ିଶାର ଦକ୍ଷିଣାଞ୍ଚଳ ପାଇଁ ବିଶ୍ୱବିଦ୍ୟାଳୟଟିଏ ହୋଇ ଅନେକ ଦିନ ବିତିଯିବା ପରେ ବି ଆମେ ଯେଉଁ ତିମିରରେ ସେହି ତିମିରରେ । ଏ ଅଞ୍ଚଳର ପ୍ରତ୍ନତାତ୍ତ୍ୱିକ ବିଭାଗର ଅନୁଧ୍ୟାନ ତଥା ସମ୍ଭାବିତ ସ୍ଥାନ ଖନନ କାର୍ଯ୍ୟ ଆରମ୍ଭ ହୋଇ ନାହିଁ । ବିଦେଶୀ ଗବେଷକଙ୍କ ବିନା ଆମେ କଣ ନିଜକୁ ନିଜେ ଚିହ୍ନି ତଉଲି ପାରିବା ନାହିଁ ? ଅନେକ ଦିନ ପରେ ଏ ଅଞ୍ଚଳ ଉପରେ ଜର୍ମାନ ଗବେଷକ Barkhard Schnepel ଙ୍କ ଏକ ମୌଳିକ ନିବନ୍ଧ "The Nandapur Surya Vansi's Origin and Consolidation of South Orissan Kingdom ଦୃଷ୍ଟିକୁ ଆସେ । ଏହି ନିବନ୍ଧଟି The Orissa Historical Research Journal Vol. XXXVIII, No 1to 4, 1993 ସଂଖ୍ୟାରେ ପ୍ରକାଶିତ ।

ବ୍ରିଟିଶ୍ ଶାସକଗୋଷ୍ଠୀ ଭାରତରେ ଶାସନ ଭାର ସମ୍ଭାଳିବା ଅବକାଶରେ ବିଭିନ୍ନ ଅଞ୍ଚଳର ଭୌଗୋଳିକ ଅବସ୍ଥିତି, ଜନସାଧାରଣଙ୍କ ଧର୍ମାଚରଣି ତଥା ସାଂସ୍କୃତିକ ପରମ୍ପରା ଏବଂ ଐତିହାସିକ ତଥ୍ୟ, ଲୋକ ବିଶ୍ୱାସ ଓ ତା' ଉପରେ ପ୍ରତିଷ୍ଠିତ ପରମ୍ପରା ଇତ୍ୟାଦି ସଂଗ୍ରହ କରିବା ଅପରିହାର୍ଯ୍ୟ ମନେ କରିଥିଲେ । ଏ ସମସ୍ତ ସୂଚନାର ଅବଗତି ବିନା ଇଂରେଜ କର୍ମଚାରୀଙ୍କ ପକ୍ଷେ ଏକ ଦୃଢ ଏବଂ ଶୃଙ୍ଖଳିତ ଶାସନ ବ୍ୟବସ୍ଥା ଜାହିର୍ କରିବା ସମ୍ଭବପର ହୋଇ ପାରୁନଥା ନାହିଁ । ଏ ପ୍ରସଙ୍ଗ ବିଶିଷ୍ଟ ଐତିହାସିକ ଁ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ଉକ୍ତି ଉଦ୍ଧାର କରଯାଇପାରେ ।

"ଇଂରେଜମାନେ ଭାରତ ଅଧିକାର କଲା ପରେ ଦେଖିଲେ ଯେ ଭାରତର ପ୍ରାଚୀନ ଗ୍ରନ୍ଥାଗାରେ ଇତିହାସ ଛଡା ସମସ୍ତ ଉପାଦାନ ରହିଛି । ସେମାନେ ଏତେ ବଡ଼ ପ୍ରାଚୀନ ସଭ୍ୟଦେଶକୁ ପରାଧୀନ କରି ତାକୁ ଶାସନ କଲାବେଳେ ଏହାର ଅତୀତ ଇତିହାସ ଓ ସଂସ୍କୃତି ହୃଦୟଙ୍ଗମ କରିବା ଏକାନ୍ତ ଆବଶ୍ୟକ ବୋଲି ମନେ କରିଥିଲେ । ଏହି ଆବଶ୍ୟକତା ବୋଧରୁ ହିଁ ଆରମ୍ଭ ହେଲ ଭାରତର ପ୍ରାଚୀନ ଇତିହାସକୁ ପୁନର୍ଗଠନ କରିବାର ପ୍ରଚେଷ୍ଟା ।

1815 ମସିହାରେ Walter Hemilton ଙ୍କ ଦ୍ୱାରା East India Gazetteer ପ୍ରକାଶିତ ହୁଏ । 1854 ମସିହାରେ Edward Thornton ଙ୍କ Gazetteer of the Territories under the Government of East India Company ପ୍ରକାଶ ପାଏ । ପରେ ପରେ ଭାରତର ସମସ୍ତ ଅଞ୍ଚଳର ତଥ୍ୟ ସଂକଳନ ପାଇଁ Imperial Gazetteer of Indiaର ସମ୍ପାଦନା ଦାୟିତ୍ୱ William Hunterଙ୍କୁ ଦିଆଯାଇଥିଲା । 1881 ଖ୍ରୀଷ୍ଟାବ୍ଦରେ ଏହାର ପ୍ରଥମ ଖଣ୍ଡ ପ୍ରକାଶିତ ହୁଏ । ଏହା ପୂର୍ବରୁ Col. Collin Macknzie ମାଡ୍ରାଜ ପ୍ରେସିଡେନ୍ସିର ବିଶେଷ ତଥ୍ୟ ସଂଗ୍ରହ ପାଇଁ ବହୁ ଗବେଷକ, ପଣ୍ଡିତ ଓ ଐତିହାସିକଙ୍କୁ ନିଯୁକ୍ତ କରିଥିଲେ । ସେ ସମସ୍ତ ସଂଗୃହୀତ ତଥ୍ୟ ବର୍ତ୍ତମାନ ମାଡ୍ରାଜସ୍ଥ Oriental Manuscripts Libraryରେ ସଂରକ୍ଷିତ ରହିଅଛି । 1862 ମସିହାରେ ପ୍ରକାଶିତ D. F. Cormicalଙ୍କ Vizagpatnam Manual ଭାରତର ବିଭିନ୍ନ ଅଞ୍ଚଳ ପାଇଁ ବୈଜ୍ଞାନିକଭିତ୍ତିରେ ଗେଜେଟିୟର ପ୍ରକାଶନର ପଥ ଉନ୍ମୁକ୍ତ କରିଦିଏ । ଏହି ଗ୍ରନ୍ଥଟିରୁ ହିଁ କୋରାପୁଟ ଅଞ୍ଚଳ

ଉପରେ ବିଶେଷ ଆଲୋକପାତ କରୁଥିବା ପ୍ରଥମ ଗ୍ରନ୍ଥ ରୂପେ ଗ୍ରହଣ କରାଯାଇ ପାରେ । ଖ୍ରୀ:୧୯୦୭ରୁ ଖ୍ରୀ:୧୯୦୯ ମଧ୍ୟରେ "ଇମ୍ପିରିୟଲ୍ ଗେଜେଟିୟର୍" ୨୬ ଖଣ୍ଡରେ ପ୍ରକାଶିତ ହୁଏ । W, Francis ଙ୍କ ଖ୍ରୀ:୧୯୦୭ରେ ପ୍ରକାଶିତ 'ଭିଜାଗାପାଟନମ୍ ଜିଲ୍ଲା ଗେଜେଟିୟର', ଖ୍ରୀ:୧୯୪୦ରେ ପ୍ରକାଶିତ R.C.S. Bell ଙ୍କ 'କୋରାପୁଟ ଜିଲ୍ଲା ଗେଜେଟିୟର' ଏବଂ ଖ୍ରୀ:୧୯୬୬ରେ ଶ୍ରୀ ନୀଳମଣି ସେନାପତି ଓ ଡଃ ନବୀନ କୁମାର ସାହୁଙ୍କ ଯୁଗ୍ମ ସଂପାଦନାରେ ପ୍ରକାଶିତ 'କୋରାପୁଟ ଗେଜେଟିୟର' ଗ୍ରନ୍ଥ ଗୁଡ଼ିକରେ ସାମସାମୟିକ ନୂଆ ପ୍ରଶାସନିକ ପରିସଂଖ୍ୟାନକୁ କେବଳ ଯୋଡ଼ିଦିଆଯାଇଛି । D. F. Carmical ଙ୍କ ଦ୍ୱାରା ସଂଗୃହୀତ ତଥ୍ୟ ଉପରେ ଉପରୋକ୍ତ ସମସ୍ତ ଗେଜେଟିୟର ଆଧାରିତ ।

କୋରାପୁଟ ଅଞ୍ଚଳ ଉପରେ ଓଡ଼ିଆ ଭାଷାରେ କେବଳ କବିବର ୰ଚିନ୍ତାମଣି ମହାନ୍ତିଙ୍କ ପ୍ରଣୀତ । ସବିଶେଷ ତଥ୍ୟ ସମ୍ବଳିତ 'ଜୟପୁର' ପୁସ୍ତକ ବ୍ୟତୀତ ଅନ୍ୟ କୌଣସି ପୁସ୍ତକ ନାହିଁ କହିଲେ ଚଳେ । ୰ ମହାନ୍ତି ୧୯୩୪ ମସିହା ଫାଲଗୁନ ମାସ (ମାର୍ଚ୍ଚ)ରେ ତତ୍କାଳୀନ ଜୟପୁର ମହାରଜା ରାଜର୍ଷି ବିକ୍ରମ ଦେବ ବର୍ମାଙ୍କ ନିମନ୍ତ୍ରଣକ୍ରମେ କୋରାପୁଟ ଅଞ୍ଚଳ ଭ୍ରମଣରେ ଆସିଥିଲେ । ଜୟପୁରର ସ୍ଥାନୀୟ ଉଚ୍ଚବିଦ୍ୟାଳୟ ପଡ଼ିଆରେ ସହରବାସୀଙ୍କ ତରଫରୁ ତାଙ୍କୁ ଉଚ୍ଛ୍ୱସିତ ସଂବର୍ଦ୍ଧନା ଦିଆଯାଇଥିଲା । ତତ୍କାଳୀନ ଜୟପୁର ଜମିଦାରୀର ବିଭିନ୍ନ ଅଞ୍ଚଳ ପରିକ୍ରମା କରି କବିବର ଚିନ୍ତାମଣି 'ଜୟପୁର'ର ପାଣ୍ଡୁଲିପି ପ୍ରସ୍ତୁତ କରିଥିଲେ ଏବଂ ମହାରାଜାଙ୍କ କର କମଳରେ ଅର୍ପଣ କରିଥିଲେ । ଆମ ନିକଟରେ ଥିବା ତଥ୍ୟ ଅନୁଯାୟୀ ଏହି ପାଣ୍ଡୁଲିପିଟି ୧୯୪୨ ମସିହାରେ ପ୍ରଥମେ ଭଦ୍ରକସ୍ଥ ବାଣୀ ସାହିତ୍ୟ ମନ୍ଦିର ଆନୁକୂଲ୍ୟରେ ପ୍ରକାଶିତ 'ଚିନ୍ତାମଣି ଗ୍ରନ୍ଥାବଳୀ'ର ତୃତୀୟ ଖଣ୍ଡରେ ସ୍ଥାନ ପାଇଥିଲା । ପରେ ୧୯୪୭ ମସିହାରେ ୰ଗୋପୀନାଥ ମହାନ୍ତି (ଅମୃତର ସନ୍ତାନ, ପରଜା ଇତ୍ୟାଦିର ସ୍ରଷ୍ଟା ଓଡ଼ିଆ ଭାଷାର ପ୍ରଖ୍ୟାତଯଶା ଔପନ୍ୟାସିକ)ଙ୍କ ଉଦ୍ୟମରେ ଶ୍ରୀବିକ୍ରମଦେବ ବର୍ମା 'ରଚନାଳୀ'ର ଦ୍ୱିତୀୟ ଖଣ୍ଡର ଶେଷ ଭାଗରେ ସ୍ଥାନପାଇ ପ୍ରକାଶିତ ହେଲା । ବର୍ତ୍ତମାନ ଉପରୋକ୍ତ ଦୁଇଟି ଗ୍ରନ୍ଥ ଦୁଷ୍ପ୍ରାପ୍ୟ । ଉପରୋକ୍ତ ଗ୍ରନ୍ଥ ଦ୍ୱୟର ଅଂଶ ବିଶେଷ ରୂପେ 'ଜୟପୁର' ପ୍ରକାଶିତ ହେବା ବ୍ୟତୀତ ତାହା ଏକ ସ୍ୱତନ୍ତ୍ର ପୁସ୍ତକାକାରରେ ପ୍ରକାଶିତ ହୋଇଥିବା ଆମ ଦୃଷ୍ଟିକୁ ଆସିନାହିଁ ।

କବିଶେଖର ଚନ୍ଦ୍ରମଣି ଓଡ଼ିଆ ସାହିତ୍ୟାକାଶରେ ଏକ ଉଜ୍ଜ୍ୱଳ ତାରକା, ମଧ୍ୟାମାଂଶ ଯୁଗର ଶେଷ ଓ ଶ୍ରେଷ୍ଠ କବି ପ୍ରତିଭା । ତାଙ୍କର ବିପୁଳ ସାହିତ୍ୟକୃତି ମଧ୍ୟରେ ଓଡ଼ିଶାର ବିଭିନ୍ନ ଅଞ୍ଚଳର ପ୍ରାକୃତିକ ବୈଚିତ୍ର୍ୟ, କିମ୍ବଦନ୍ତୀ ଓ ଇତିହାସ ଉପରେ ଆଧାରିତ ବର୍ଣ୍ଣନାର କାବ୍ୟଗ୍ରନ୍ଥମାନ ଐତିହାସିକ ଦୃଷ୍ଟିକୋଣରୁ ଉପାଦେୟ । ବିଭିନ୍ନ ରାଜନ୍ୟମଣ୍ଡଳୀ ଦ୍ୱାରା ନିମନ୍ତ୍ରିତ ହୋଇ କବି ଓଡ଼ିଶାର ବହୁ ଅଞ୍ଚଳ ପରିକ୍ରମା କରିଥିବା ଜଣାଯାଏ । ପ୍ରାକୃତିକ ଦୃଶ୍ୟ, ଅରଣ୍ୟ ଓ ପର୍ବତ ପ୍ରତି ବାଲ୍ୟକାଳରୁ ଦୁର୍ବଳଥିବା କବିଟିଏ ଚନ୍ଦ୍ରମଣି । ସୁଯୋଗକ୍ରମେ ବହୁ ଅନୁଭବର ଗୁରୁଗାମ୍ଭୀର୍ଯ୍ୟରେ ଅଜସ୍ର ଧାରା ତାଙ୍କର ଲେଖନୀ । ଉତ୍କଳ ସାରସ୍ୱତ ଭଣ୍ଡାର ତାଙ୍କର ବିପୁଳ ଦାନରେ ଋଦ୍ଧ ମନ୍ତ । 'ଧୁମୁସର' 'ସୁରଙ୍ଗୀ', 'ଉଦ୍ୟାନଖଣ୍ଡ,' 'ଧରାକୋଟ ଦର୍ଶନ' ଗଞ୍ଜାମ ଭ୍ରମଣ' ତାଙ୍କର ଅସାଧାରଣ ସାଧନାର ପ୍ରତୀକ । ଓଡ଼ିଆ ସାହିତ୍ୟରେ ଚନ୍ଦ୍ରମଣି ସାଧକ-କବି । କବିଶେଖରଙ୍କ ଅଜସ୍ରକୃତି ମଧ୍ୟରେ 'ଜୟପୁର' ଏକ ବ୍ୟତିକ୍ରମ । ଏହା ସର୍ବାଙ୍ଗୀ ଏକ କାବ୍ୟ ନୁହେଁ । କିନ୍ତୁ କବି ସୁଲଭ ବର୍ଣ୍ଣାଢ୍ୟ ଭାଷା, ମନୋଜ୍ଞ ଶୈଳୀ ଓ ବର୍ଣ୍ଣନା ପରିପାଟୀରେ ଏହା ଏକ ଅନନ୍ୟ ଗ୍ରନ୍ଥ । ଏହା ଏକ ଗଦ୍ୟଗ୍ରନ୍ଥ ହେଲେହେଁ କବିଙ୍କ ଅନ୍ୟ ଗଦ୍ୟଗ୍ରନ୍ଥ ତୁଳ୍ୟ ଏଥିରେ ଉପନ୍ୟାସ ସୁଲଭ ଭାବବୈଚିତ୍ର୍ୟ ଅପେକ୍ଷା ବର୍ଣ୍ଣନା ବୈଚିତ୍ର୍ୟ ଅଧିକ ସ୍ପଷ୍ଟ । ଏହା ସର୍ବୋପରି କୋରାପୁଟ ଅଞ୍ଚଳର ଭୌଗୋଳିକ, ପ୍ରାକୃତିକ, ସାମାଜିକ, କିମ୍ବଦନ୍ତୀଭିତ୍ତିକ ବିବରଣୀ ସହ ଜୟପୁର ରାଜବଂଶାବଳୀର ଇତିହାସ ଏବଂ ତତ୍କାଳୀନ ମହାରାଜା ରାଜର୍ଷି ବିକ୍ରମଦେବ ବର୍ମାଙ୍କ ଜୀବନ ପଞ୍ଜିକା ସମ୍ବଳିତ ସାହିତ୍ୟ ରସୋତ୍ତୀର୍ଣ୍ଣ ସୁଖପାଠ୍ୟ ଏକ ଉପାଦେୟ ଇତିହାସ ଗ୍ରନ୍ଥ ।

କୋରାପୁଟ ଅଞ୍ଚଳ ଉପରେ ପୂର୍ବରୁ ବିଭିନ୍ନ ସମୟରେ ପ୍ରକାଶିତ ପ୍ରାୟ ସମସ୍ତ ଗେଜେଟିୟର, ହେମନ୍ତ କୁମାର 'ବିଦ୍ୟାଧର ସିଂହଦେଓଙ୍କ ପ୍ରଣୀତ Nandapur, a Forsaken Kingdom' ବର୍ତ୍ତମାନ ଦୁଷ୍ପ୍ରାପ୍ୟ । କବିଶେଖର ଚନ୍ଦ୍ରମଣିଙ୍କ 'ଜୟପୁର' ଗ୍ରନ୍ଥକୁ ବହନ କରିଥିବା 'ଚନ୍ଦ୍ରମଣି ଗ୍ରନ୍ଥାବଳୀ' ତଥା 'ଶ୍ରୀବିକ୍ରମଦେବବର୍ମ ରଚନାଳି' ମଧ୍ୟ ସୁଲଭ ନୁହେଁ ବୋଲି ପୂର୍ବରୁ ସୂଚନା ଦେଇଛୁ । ଏଣୁ କୋରାପୁଟସ୍ଥ ଶ୍ରୀ ଶ୍ରୀ ଜଗନ୍ନାଥ ମନ୍ଦିର ପରିଚାଳନା ସଂସ୍ଥା ଦ୍ୱାରା ପରିଚାଳିତ 'ଶାବରସଂସ୍କୃତି ଗବେଷଣାକେନ୍ଦ୍ର' ଆନୁକୂଲ୍ୟରେ 'ଜୟପୁର'କୁ ପୁସ୍ତକାକାରରେ ପୁନଃ ପ୍ରକାଶ କରାଗଲା । R.C.S.Bell ଙ୍କ ଗେଜେଟିୟରକୁ

ଶ୍ରୀ ଶ୍ରୀ ଜଗନ୍ନାଥ ମନ୍ଦିର ପରିଚାଳନା ସଂସ୍ଥା, କୋରାପୁଟର ମାସିକ ପତ୍ରିକା 'ଶାବର ଶ୍ରୀକ୍ଷେତ୍ର'ରେ ଧାରାବାହିକ ପ୍ରକାଶ କରାଯାଉଛି ।

ସମାଜ ଓ ଇତିହାସ ମଧ୍ୟରେ ସଂପର୍କ ଅବିଚ୍ଛିନ୍ନ । ସମାଜ ଏକ ଗତିଶୀଳ ଜୀବନ୍ତ ଅନୁଷ୍ଠାନ । ଇତିହାସ ସେ ଗତିଶୀଳତାର ଅଭ୍ରାନ୍ତ ସାକ୍ଷ୍ୟ ବହନ କରେ । କାଳବକ୍ଷରେ ଘଟଣାର ଆବୃତ୍ତି ଓ ପୁନରାବୃତ୍ତି ମଧ୍ୟରେ ଏକ ସତ୍ୟ ସନ୍ଧାନ କରେ ଓ ଶାଶ୍ୱତ ମୂଲ୍ୟବୋଧର ରୂପରେଖ ନିର୍ଣ୍ଣୟ କରେ ଇତିହାସ । ମନୁଷ୍ୟର ବିବର୍ତ୍ତନ ଅପେକ୍ଷା ବିବର୍ତ୍ତିତ କାଳବକ୍ଷରେ ତାର ଚେତନାର ଅଭିବ୍ୟକ୍ତିକୁ ଧାରଣ କରେ ଇତିହାସ । ସମାଜ ଏକ ନିରବଚ୍ଛିନ୍ନ ଧାରା, ଇତିହାସ ତାର ଏକ ପ୍ରମାଣୋତ୍ତର ପ୍ରତିଭୂ, ଏକ ସଂକେତାତ୍ମକ ପ୍ରତିରୂପ । ଏହି ପ୍ରତିରୂପର ପ୍ରସ୍ତୁତି କାଳରେ ଐତିହାସିକ ବହୁ ପ୍ରାମାଣିକ ଗ୍ରନ୍ଥର ଆଶ୍ରୟ ନିଅନ୍ତି । କିନ୍ତୁ ସେ ଗୁଡ଼ିକ ଅଭ୍ରାନ୍ତ ଏବଂ ଯୁକ୍ତିଯୁକ୍ତ ବୋଲି ସର୍ବଦା ସ୍ୱୀକାର କରିହୁଏ ନାହିଁ । ତଥାପି ଏହାହିଁ ଯୋଗାଇଥାଏ ଗବେଷକଙ୍କୁ ସମ୍ବଳ, ଗବେଷଣାରେ ଅଗ୍ରସର ହେବାର ପାଥେୟ । ପ୍ରସ୍ତୁତ 'ଜୟପୁର'ର ଏହି ଦୃଷ୍ଟିରୁ ପୁନଃ ପ୍ରକାଶ ଏବଂ ଗ୍ରନ୍ଥର ପରିଶିଷ୍ଟରେ ପ୍ରଦତ୍ତ ତଥ୍ୟ ଓ ସୂଚନା ଗବେଷକଙ୍କ ସହାୟକ ହୋଇ ପାରିଲେ ଶ୍ରମ ସାର୍ଥକ ହେବ ।

ପାଠକଙ୍କ ସଦିଚ୍ଛା ଲାଭକଲେ ଏହି ଗବେଷଣା କେନ୍ଦ୍ର ଅନେକ ଦୁଷ୍ପ୍ରାପ୍ୟଗ୍ରନ୍ଥ ଲୋକଲୋଚନକୁ ଆଣିବାରେ ପ୍ରେରଣା ପାଇବ ।

କୃଷ୍ଣଚନ୍ଦ୍ର ପାଣିଗ୍ରାହୀ

ପ୍ରକାଶକ



# ଉପହାର

କୋବିଦବୃନ୍ଦବନ୍ଦିତ, ସାହିତ୍ୟ-ସମ୍ରାଟ୍,
ଜୟପୁରାଧୀଶ୍ୱର ମହାରାଜ
ଶ୍ରୀ ଶ୍ରୀ ଶ୍ରୀ ବିକ୍ରମଦେବ ବର୍ମା ।
ମହୋଦୟ　　ମହତ୍ସନ୍ନିଧାନେଷୁ ।



ପୂଜାସ୍ପଦ ଶ୍ରୀମନ୍ମହାଭାଗ,

ଶ୍ରୀଛାମୁ ବିଶାଳରାଜ୍ୟର ଅଧୀଶ୍ୱର, ଶ୍ରୀଛାମୁଙ୍କର ରାଜପୂଜା ଧନରତ୍ନ ସାପେକ୍ଷ; ମାତ୍ର ସାରସ୍ୱତ ରାଜ୍ୟର ସମ୍ରାଟ ଭାବରେ ଶ୍ରୀଛାମୁଙ୍କର ପୂଜା ସ୍ୱତନ୍ତ୍ର । ସାରସ୍ୱତ ପୂଜା ସାରସ୍ୱତ ଉପାଦାନରେ ହିଁ ହୁଏ । ଏହି ବିଶ୍ୱାସର ବଶବର୍ତ୍ତୀ ହୋଇ ମୁଁ ଏହି "ଜୟପୁର" ପୁସ୍ତକଖଣ୍ଡିକ ପୂଜା ଫୁଲରୂପେ ଶ୍ରୀଛାମୁଙ୍କ ପୁଣ୍ୟ-ପୂତକର-କମଳରେ ଭକ୍ତ୍ୟୁପହାର ଅର୍ପଣ କରୁଅଛି । ଏହା ଶ୍ରୀଛାମୁଙ୍କ ପ୍ରଥମ ଦର୍ଶନର ସ୍ମାରକ ନିଦର୍ଶନ ସ୍ୱରୂପ । ଶ୍ରୀଛାମୁଙ୍କ ପୂଜାର ଏହା ଉପଯୁକ୍ତ ଉପାଦାନ ନହେଲେହେଁ, ସୁନ୍ଦର ସୌରଭମୟ ଚମ୍ପକ ଅପେକ୍ଷା ରୂପଗନ୍ଧହୀନ ଧୂସ୍ତୁରଫୁଲ ଶିବଙ୍କର ସମଧିକ ପ୍ରୀତିପ୍ରଦ ହୁଏ-ଏହି ଶାଶ୍ୱତ ସତ୍ୟ ଉପରେ ନିର୍ଭର କରି ମୁଁ ଏ କାର୍ଯ୍ୟରେ ସାହସୀ ହୋଇଅଛି, ଏଥିରେ ଶ୍ରୀଛାମୁଙ୍କ ରାଜ୍ୟ, ବଂଶ ଏବଂ ଶ୍ରୀଛାମୁଙ୍କ ପବିତ୍ର ଆଖ୍ୟାନ ବର୍ଣ୍ଣିତ ହୋଇଅଛି । ଛୁଞ୍ଚି, ସୂତା, ଫୁଲ ସବୁ ଶ୍ରୀଛାମୁଙ୍କର, ମୁଁ କେବଳ ହାର ଗୁନ୍ଥିଅଛି ମାତ୍ର । ସଦୟ ଗ୍ରହଣାନୁମତି ହେଉ — ଏତିକି ସବିନୟ ମାଗୁଣି । ବସନ୍ତ ସ୍ପର୍ଶ-ବିକଶିତ ମଲ୍ଲିକା କୁସୁମରେ ହିଁ ସେହି ଋତୁ ସମ୍ରାଟ୍ ବସନ୍ତ ଦେବଙ୍କୁ ପୂଜା କଲାପରି ମୋର ଏ ଭକ୍ତି ପୂଜା ଶ୍ରୀଛାମୁରେ ଗୃହୀତ ହେଲେ ମୁଁ ନିଜକୁ କୃତାର୍ଥ ମଣିବି ।

ଭଦ୍ରକ
ତା ୨୫।୧୧।୧୯୩୪

ଶ୍ରୀଛାମୁଙ୍କର
ସ୍ନେହ-ସହାନୁଭୂତି-ପ୍ରାର୍ଥୀ
ଶ୍ରୀ ଚିନ୍ତାମଣି ମହାନ୍ତି



# ଆତ୍ମକଥା

"ଜୟପୁର ଏଜେନ୍‌ସି ଉତ୍କଳ-ସମ୍ମିଳନୀ"ର ପ୍ରଥମ ଅଧିବେଶନ ପରେ ଲବ୍ଧପ୍ରତିଷ୍ଠ ଐତିହାସିକ ଶ୍ରୀଯୁକ୍ତ ବ୍ରଜବନ୍ଧୁ ଦାଶ, ଏମ୍. ଏ., ବି. ଏଲଙ୍କର "ଜୟପୁର ସମ୍ମିଳନୀ" ଶୀର୍ଷକ ପ୍ରବନ୍ଧ "ସହକାର" ପତ୍ରରେ ପ୍ରକାଶିତ ହେଲା । ସେଥିରେ ସେ ଲେଖିଥିଲେ—"ପ୍ରତ୍ୟେକ ଓଡ଼ିଆର ଜୟପୁର ଅଞ୍ଚଳ ଥରେ ଯାଇ ଦେଖି ଆସିବା ଦରକାର । × × × × × × ଉତ୍କଳର ପ୍ରାକୃତିକ ବୈଚିତ୍ର୍ୟ ଜୟପୁରରେ, ଉତ୍କଳର ପ୍ରଚ୍ଛନ୍ନ ସମ୍ପତ୍ତି ଜୟପୁରରେ, ଉତ୍କଳର ଅନାବିଳ ଉତ୍କଳତ୍ତ୍ୱ ସେହି ଜୟପୁରରେ ।" ମୁଁ ପ୍ରଥମ ବିଶେଷତ୍ୱଟି ପ୍ରତି ଆକୃଷ୍ଟ ହେଲି । ଜୀବନର ଅଧିକାଂଶ ସମୟ ମୁଁ ବନପର୍ବତରେ ବୁଲି କଟାଇଅଛି । ବନ ପର୍ବତହିଁ ମୋର ପ୍ରିୟ—ମୋ ପକ୍ଷରେ ଲୋଭନୀୟ । ଜୟପୁର ଦେଖିବାର ବାସନା ବଳବତୀ ହୋଇଉଠିଲା । ଅଧୀର ଉତ୍କଣ୍ଠା ବିଳମ୍ବ ସହିପାରେ ନାହିଁ—ଏହା ସ୍ୱତଃସିଦ୍ଧ କଥା । ସ୍ଥାନ ବିଶେଷର ବର୍ଣ୍ଣନା ପଢ଼ି ମନ ମଧ୍ୟରେ ଅଜ୍ଞାତରେ ଯେଉଁ ସୁନ୍ଦର ଛବି ସ୍ୱତଃ ଅଙ୍କିତ ହୋଇଯାଏ, ତାହାର ଆକର୍ଷଣ ବଡ଼ ପ୍ରବଳ । ଅତୃପ୍ତ ଆକାଂକ୍ଷାର ତୀବ୍ର ଭର୍ତ୍ସନା ବାରମ୍ବାର ସହ୍ୟ କରିବାକୁ ହେଉଥାଏ । ଇଚ୍ଛା ଅବସ୍ଥାର ପ୍ରତିକୂଳ ହେଲେ ଏହିପରି ଘଟିଥାଏ । ଜୟପୁର ମହାରାଜା, ସାହିତ୍ୟସମ୍ରାଟ୍ ବିକ୍ରମଦେବ ବର୍ମା ମହୋଦୟ ଦଶହରା ପର୍ବ ସମୟରେ ମୋତେ ଜୟପୁର ଯିବା ପାଇଁ ଲେଖିଲେ । ସେଥର ଦଶହରା ସମୟରେ ପ୍ରବଳ ବୃଷ୍ଟି ହେଲା । ଚିର ଆଶଙ୍କାମୟ ଜୀବନ ହେଲା ସେହି ଦୁର୍ଯୋଗରେ ସୁଦୂରବର୍ତ୍ତୀ ଜୟପୁର ଯିବାକୁ ମୋର ସାହସ କୁଳାଇଲା ନାହିଁ । ତହୁଁ ବସନ୍ତକାଳରେ ଯିବାପାଇଁ ମହାରାଜା ମହୋଦୟଙ୍କୁ ଆନ୍ତରିକ ଧନ୍ୟବାଦ ସହ ଜଣାଇଦେଲି । ଗତ ଫାଲଗୁନ ମାସର ଶେଷ ସପ୍ତାହରେ ମୁଁ ଜୟପୁର ଯାଇଥିଲି । ସଙ୍ଗରେ ମୋର ଅନୁଜ ସୋମନାଥ ଏବଂ ପୁତ୍ର ଉପେନ୍ଦ୍ର ଯାଇଥିଲେ । ରାଜାଙ୍କଠାରେ ସୁଖ ସୁବିଧାରେ ଯିବାର ବ୍ୟବସ୍ଥା ହୋଇଥିଲା । ଜୟପୁରରେ ଆମ୍ଭେମାନେ ଏଗାର ଦିନ ଅବସ୍ଥାନ କରିଥିଲୁଁ । ପ୍ରଧାନ ପ୍ରଧାନ ଐତିହାସିକ ସ୍ଥାନ ଏବଂ ଦର୍ଶନୀୟ ସ୍ଥାନ ଦେଖିବାର ସୁବ୍ୟବସ୍ଥା ଷ୍ଟେଟପକ୍ଷରୁ ହୋଇଥିଲା । ଯାନ, ବାହନର ଏରୂପ ସୁନ୍ଦର ବ୍ୟବସ୍ଥା ହୋଇଥିଲା ଯେ, ଜରାଜର୍ଜର ଶରୀରରେ ମୁଁ କୌଣସି ଅସୁବିଧା ଅନୁଭବ କରି ନାହିଁ । ଏହା ମୋ ପ୍ରତି ବିଶେଷ ରାଜ ଆନୁକୂଲ୍ୟର ନିଦର୍ଶନ ।

ଜୟପୁର ଅବସ୍ଥାନ କାଳରେ ମୁଁ ଯେଉଁ ଦର୍ଶନୀୟ ସ୍ଥାନସମୂହ ଦେଖିଥିଲି, ରାଜା ଏବଂ ରାଜ୍ୟ ସମ୍ବନ୍ଧରେ ଯାହାଯାହା ଲୋକମୁଖରୁ ସଂଗ୍ରହ କରିଥିଲି ତାହାହିଁ ଏ ପୁସ୍ତକର ବର୍ଣ୍ଣନୀୟ ବିଷୟ । ତଦ୍‌ବ୍ୟତୀତ ରାଜ୍ୟର ଭୌଗୋଳିକ, ପ୍ରାକୃତିକ, ସାମାଜିକ, କୈମ୍ବଦନ୍ତୀକ ବିବରଣୀ ରାଜବଂଶର ଇତିହାସ ବର୍ତ୍ତମାନ ମହାରାଜାଙ୍କ ଜୀବନପଞ୍ଜିକା ପୁସ୍ତକରେ ସନ୍ନିବେଶିତ ହୋଇଅଛି । ମୋର ଜୟପୁର ଦର୍ଶନର ସ୍ମାରକ ସ୍ୱରୂପ ପୁସ୍ତକର ନାମ "ଜୟପୁର" ରଖିଅଛି ।

ପୁସ୍ତକ ଲେଖିବା ସମୟରେ ଜୟପୁର ରାଜବଂଶାବଳୀ; ମହାରାଜଜାମାତା କୁମାର ବିଦ୍ୟାଧର ସିଂହଦେବଙ୍କ ପ୍ରଣୀତ "Jeypore in VIzagapattam" ବିଶାଖପଟ୍ଟଣ ଜିଲ୍ଲାର ଗେଜେଟିୟର ଏବଂ ଉତ୍କଳର ସୁପରିଚିତ ଐତିହାସିକ ପ୍ରତ୍ନତତ୍ତ୍ୱଜ୍ଞ, ସାହିତ୍ୟିକ ଡ଼ାକ୍ତର ରାଧାଚରଣ ପଣ୍ଡାଙ୍କ ବିରଚିତ "ରାଜକବି ବିକ୍ରମଦେବ" ନାମକ ପୁସ୍ତକମାନଙ୍କରୁ ଆବଶ୍ୟକ ମତେ ସାହାଯ୍ୟ ଗ୍ରହଣ କରିଅଛି । ସେଥିପାଇଁ ମୁଁ ଗ୍ରନ୍ଥକାରମାନଙ୍କ ନିକଟରେ କୃତଜ୍ଞ । ଏହା ଭିନ୍ନ ନୂତନ, ପୁରାତନ, ମାସିକ, ସାପ୍ତାହିକ ଏବଂ ଦୈନିକ ପତ୍ରପତ୍ରିକାରୁ ଜୟପୁର ସମ୍ବନ୍ଧୀୟ ଅନେକ ବିଷୟ ସଂଗୃହୀତ ହୋଇଅଛି । ସ୍ୱୟଂ ସାହିତ୍ୟ ସମ୍ରାଟ୍ ମହାରାଜା ମହୋଦୟ ମଧ୍ୟ ଇତିହାସ ସଙ୍କଳନ ବିଷୟରେ ଯଥେଷ୍ଟ ସାହାଯ୍ୟ କରି ମୋର ଅତୁଳଭକ୍ତି ଏବଂ ଧନ୍ୟବାଦଭାଜନ ହୋଇଅଛନ୍ତି । ଏହି ପୁସ୍ତକ-ପାଠକଙ୍କ ବହୁ ପୁରାତନ ବିଶାଳ ଜୟପୁର ରାଜ୍ୟ ସମ୍ବନ୍ଧରେ କେହି ଯତ୍‌କିଞ୍ଚିତ୍ ଅଭିଜ୍ଞତା ଲାଭକଲେ ମୁଁ ଶ୍ରମ ସାର୍ଥକ ମଣିବି ।

ଶ୍ରୀ ଚିନ୍ତାମଣି ମହାନ୍ତି



# ପ୍ରଥମ ପରିଚ୍ଛେଦ

ବିଶାଖପଟ୍ଟଣ ଜିଲ୍ଲାସ୍ଥ [1]ଜୟପୁର ରାଜ୍ୟ ପ୍ରାକୃତିକ ଉତ୍କଳର ଗୋଟିଏ ବିଶାଳ, ବଳିଷ୍ଠ, ବିଶିଷ୍ଟ ଅଙ୍ଗ । କିମ୍ବଦନ୍ତୀ ମୁଖରେ ପ୍ରକାଶ, ଜଣେ ଆନ୍ଧ୍ର ରାଜା କାଶୀ ଯାଉଁ ଯାଉଁ ପଥରେ ଏହିଠାରେ ଅବସ୍ଥାନ କରିଥିଲେ । ସ୍ଥାନଟି ତାଙ୍କର ଏପରି ପ୍ରୀତିପଦ ହେଲା ଯେ, ସେ ଏଠାରେ ତାଙ୍କର ଆରାଧ୍ୟ ଦେବତା ବୈଶାଖ ଅର୍ଥାତ୍ କାର୍ତ୍ତିକେୟଙ୍କ ନାମରେ ଗୋଟିଏ ଦେବାଳୟ ନିର୍ମାଣ କରାଇ ଦେବତା ପ୍ରତିଷ୍ଠା କରିଥିଲେ । ତଦନୁସାରେ ସ୍ଥାନର ନାମ ବୈଶାଖପତ୍ତନ ହୋଇଥିଲା । ବିଶାଖପାଟଣ ତାହାର ଅପଭ୍ରଂଶ । ବିଶାଖପଟ୍ଟଣ କଳିଙ୍ଗ ରାଜ୍ୟର ଗୋଟିଏ ଅଂଶ ଥିଲା । ବିଶାଖପଟ୍ଟଣ ଜିଲ୍ଲା ପାଞ୍ଚଭାଗରେ ବିଭକ୍ତ, ଯଥା—ବିଶାଖପଟ୍ଟଣ, ବିଜୟନଗର, ନାରସାପତ୍ତନ, ମାଡ଼ଗୋଲ ଏବଂ କୋରାପୁଟ । କୋରାପୁଟ ଛ ଅଂଶରେ ବିଭକ୍ତ, ଯଥା—କୋରାପୁଟ, ଜୟପୁର, ପାଦୁଆ, ପୋଟାଙ୍ଗି, ମାଲକାନଗିରି ଏବଂ ନବରଙ୍ଗପୁର । ବିଶାଖପଟ୍ଟଣର ଏଜେନ୍ସି ବା ମାଳମଧ୍ୟରେ ଜୟପୁର । ଏଜେନ୍ସି ବିଭାଗ ୧୮୩୯ ଖ୍ରୀଷ୍ଟାବ୍ଦର ସ୍ୱତନ୍ତ୍ର ଆଇନ ବଳରେ ଜଣେ ବିଶେଷ କ୍ଷମତାପ୍ରାପ୍ତ କଲେକ୍ଟରଙ୍କ ଦ୍ୱାରା ଶାସିତ ହୁଏ । ତାଙ୍କୁ ଏଜେଣ୍ଟ କହନ୍ତି । ଏଜେନ୍ସି ବା ମାଳ ଅଞ୍ଚଳ ସ୍ୱଭାବତଃ ଗିରିକାନନ ସଙ୍କୁଳ । ଲୋକେ ସାଧାରଣତଃ ଆଦିମ ଜାତୀୟ । ସାଧାରଣ ଆଇନ ବଳରେ ସେମାନଙ୍କୁ ଶାସନ କରିହେବ ନାହିଁ ବୋଲି ସ୍ୱତନ୍ତ୍ର ଆଇନର ପ୍ରୟୋଜନ ହୋଇଅଛି ।

ନନ୍ଦପୁରାଧୀଶ୍ୱର ବୀର ବିକ୍ରମ ଦେବ ୧୬୩୭ ଖ୍ରୀଷ୍ଟାବ୍ଦରୁ ୧୬୬୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେ ନନ୍ଦପୁର ଠାରୁ ନିଜର ରାଜଧାନୀ ବର୍ତ୍ତମାନ ଜୟପୁରକୁ ଉଠାଇ ଆଣିଥିଲେ । ନନ୍ଦପୁରରେ ରାଜବଂଶ ଅଭିବୃଦ୍ଧି ହେଲା ନାହିଁ, ଏକ ପୁରୁଷ ହୋଇଆସିଲା । ରାଜଧାନୀ ପରିବର୍ତ୍ତନର ଏହା ହିଁ କାରଣ. ରାଜଧାନୀ ହେବା ପୂର୍ବରୁ ବର୍ତ୍ତମାନ ଜୟପୁରରେ ଜୈନମାନେ ବାସ କରୁଥିଲେ । ଜୟପୁରର ପ୍ରାୟ ଅର୍ଦ୍ଧ ମାଇଲ ପଶ୍ଚିମରେ ଜୈନନଗର ନାମକ ପଲ୍ଲୀ ଅଦ୍ୟାପି ବିଦ୍ୟମାନ । ତାହାର ପ୍ରାଚୀନ ନାମ ଜୟ୍ନାନ ବା ଜୈନନଗର, ପରେ କିଛି କାଳ ଜୈନନଗର ନାମ ଧାରଣ କଲା । ତହିଁ ପରେ ଜୟନଗର

ଥିଲା । ସେତେବେଳେ ଜୟପୁର ନାମ ପରି ରାଜଧାନୀ ଥିଲା । [illegible] ନବାବ ଜୟପୁରର ଜଣେ ରାଜାଙ୍କ "ଝାଡ଼ଖଣ୍ଡ ବାଦସା" ଉପାଧି ପ୍ରଦାନ କରିଥିଲେ । ସେହି ହେତୁରୁ ଜୟପୁରକୁ "ଝାଡ଼ଖଣ୍ଡ ବାଦସାହ ମୂଲକ" ବୋଲି କହନ୍ତି । ଏହି ଉପାଧିପ୍ରାପ୍ତ ରାଜା ପ୍ରଥମ ବାଉନ ଦେବ । ସେ ୧୭୫୮ ରୁ ୧୭୮୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏହି ରାଜା ୧୭୭୭ ଖ୍ରୀଷ୍ଟାବ୍ଦରେ କୋଟପାଡ଼ର ବର୍ତ୍ତମାନ ଭଗ୍ନାବଶେଷ ଦୁର୍ଗ ନିର୍ମାଣ କରିଥିଲେ ।

ଜୟପୁର ରାଜ୍ୟ ଉତ୍ତରରେ ଛତିଶଗଡ଼ ଦେଶ । ପୂର୍ବରେ [illegible] ଫୁଟ ଉଚ୍ଚତାବିଶିଷ୍ଟ ପୂର୍ବଘାଟ ପର୍ବତମାଳା, ଦକ୍ଷିଣରେ ମାଲକାନଗିରି ତାଲୁକା । ପଶ୍ଚିମରେ କୋଲାବ ନଦୀ ଏବଂ ବସ୍ତର ରାଜ୍ୟ । ଜୟପୁର ଏକ ବିରାଟ ବିସ୍ତୃତ ରାଜ୍ୟ ଏହାର ପରିମାଣ ଫଳ ପ୍ରାୟ ୧୩୦୦ ବର୍ଗ ମାଇଲ୍ । ଲୋକସଂଖ୍ୟା ପ୍ରାୟ ୧୧୦୦୦୦୦ । ସେଥି ମଧ୍ୟରେ ଶତକରା ୯୬ ଜଣ ଓଡ଼ିଆ ଅଧିବାସୀ । ରାଜ୍ୟରେ ଅରଣ୍ୟ ଓ ପାର୍ବତ୍ୟ ଭୂମି ଅଧିକ । ବସତିଯୋଗ୍ୟ ସ୍ଥାନ ଅପେକ୍ଷାକୃତ ଊଣା ହେତୁ ଅଧିବାସୀ ସଂଖ୍ୟା ଊଣା ହୋଇଅଛି; ମାତ୍ର ରାଜ୍ୟର ପରିମାଣ ଫଳ ଓଡ଼ିଶାର ପୁରୀ, କଟକ, ବାଲେଶ୍ୱର, ସମ୍ବଲପୁର, ଏବଂ ଅନୁଗୁଳର ଏକତ୍ର କ୍ଷେତ୍ରଫଳ ସଙ୍ଗେ ସମାନ । ଉତ୍କଳର ଗୋଟାଏ ଏତେ ବଡ଼ ଶକ୍ତି ତାହାଠାରୁ ବିଚ୍ଛିନ୍ନ ହୋଇ ରହିଛି, ଏହା ଉତ୍କଳ ପକ୍ଷରେ ଅତୀବ ଦୁର୍ଭାଗ୍ୟର ବିଷୟ ।

ବନ୍ୟ ଏବଂ ଖଣିଜ ସମ୍ପଦରେ ଜୟପୁର କୁବେର ପ୍ରତିମା ଭୂମି ପ୍ରାକୃତିକ ନିୟମରେ ଉର୍ବରା ବାସ୍ତବରେ ଜୟପୁର ରତ୍ନପ୍ରସୂ ରାଜ୍ୟ । ନୈସର୍ଗିକ ସୁଷମାରେ ମର୍ତ୍ତ୍ୟର ଅମରାବତୀ । ଜୟପୁରକୁ ଯିବା ପାଇଁ ପଥ ଘାଟର ବଡ଼ ଅଭାବ ଥିଲା । ବିଶେଷତଃ ନିବିଡ଼ ଅରଣ୍ୟମୟ ଗିରିସଙ୍କୁଳ ପ୍ରଦେଶ ହେତୁ ତାହା ମାନବର ଅଗମ୍ୟ ସ୍ଥାନ ହୋଇଥିଲା; ଏମନ୍ତ କି ଅତି ଦୁଃସାହସୀ ସୁଦ୍ଧା ଯିବାକୁ ଭୟ କରୁଥିଲା । ଏ ହେତୁ ଲୋକେ ଜୟପୁରକୁ ଯମ ଆଖ୍ୟା ପ୍ରଦାନ କରିଥିଲେ । ଏ ସମ୍ବନ୍ଧରେ ଗୋଟାଏ ପ୍ରବାଦ ଅଛି । ତାହାକୁ ପ୍ରବାଦ ନ କହି ସତ୍ୟ ଘଟଣା କହିଲେ ମଧ୍ୟ ଅତିରଞ୍ଜିତ ହେବ ନାହିଁ । ଗଞ୍ଜାମ ଅଞ୍ଚଳର ଜଣେ ଲୋକ ସଙ୍କଟ ପୀଡ଼ାରେ ଆକ୍ରାନ୍ତ ହୋଇ ମରଣାପନ୍ନ ଅବସ୍ଥାରେ ଉପସ୍ଥିତ ହେଲା । ତାକୁ ଯେ ଦେଖିଲା ସେ ଯମପୁରର ନିକଟବର୍ତ୍ତୀ ଯାତ୍ରୀ ବୋଲି ନିର୍ଦ୍ଦେଶ କଲା । ତେବେ ସେ ଜଣେ ଜ୍ୟୋତିଷକୁ କୋଷ୍ଠୀ ଗଣନା କରିବାକୁ କହିବାରୁ ଜ୍ୟୋତିଷ କହିଲା— "ତୁ ଆଉ ବଞ୍ଚିବୁ ନାହିଁ, ଖୁବ୍ ଶୀଘ୍ର ତୋର ମୃତ୍ୟୁ ଘଟିବ ।" ତହୁଁ ସେ ଯମକୁ

ଠକାଇବା ପାଇଁ ମନେ ମନେ ଚିନ୍ତା କରି କହିଲା, ଜୟପୁରକୁ ତ ଲୋକେ ଯମପୁର ବୋଲି କହନ୍ତି । ମୁଁ ସେହିଠାରେ ଯାଇ ରହିଲେ ଆଉ ମୋତେ ଯମ କାହିଁରେ ନେବ ? ଏହି କୌଶଳରେ ମୁଁ ଯମକୁ ଠକାଇ ଦେଇ ପାରିବ । ଏହା ଭାବି ସେ ଜୟପୁରରେ ଯାଇ ରହିଲା । ସୌଭାଗ୍ୟକ୍ରମେ ସେ କିଛି ଦିନ ପରେ ସମ୍ପୂର୍ଣ୍ଣ ରୋଗମୁକ୍ତ ହୋଇ ଆଉ ଘରକୁ ନ ଫେରି ସେହି ଜୟପୁରରେ ରହିଲା । ଲୋକଟି ଅଦ୍ୟାପି ଜୀବିତ । ତାହାର ମୂଢ଼ ବିଶ୍ୱାସ ତାକୁ ପ୍ରତ୍ୟକ୍ଷ ଫଳ ପ୍ରଦାନ କଲା ! ବାସ୍ତବରେ ଏହା ସତ୍ୟ ଘଟଣା !

ଜୟପୁରକୁ ଘାଟିପଥ ଫିଟିଲା ଦିନୁ ତାର ଯମପୁର ଅପବାଦ ତିରୋହିତ ହୋଇଅଛି । ଏବେ ଜୟପୁର ବାଣିଜ୍ୟତୀର୍ଥରେ ପରିଣତ ହୋଇ ଅମରାବତୀ ଏବଂ ଅଳକାପୁରୀକୁ ନୀରବରେ ପରିହାସ କରୁଅଛି । ନୀରବ ପରିହାସ ବାସ୍ତବରେ ଉଗ୍ର ବିଷ ପରି ବଡ଼ ଖରା । ତାହା ପ୍ରାଣର ଅନ୍ତଃପୁରକୁ ଜାଳିଦିଏ ।

ଜୟପୁର ଯିବାକୁ ହେଲେ ରେଲଗାଡ଼ିରେ ବିଜୟନଗର ପର୍ଯ୍ୟନ୍ତ ଯାଇ ସେଠାରୁ ରେଲ ବା ମୋଟର ବାସରେ ସାଲୁର ଯିବାକୁ ହୁଏ । ଉଭୟର ଭଡ଼ା ସମାନ । ବିଜୟନଗର ଗୋଟିଏ ସୁସଜ୍ଜିତ ସହର । ସେଠାରେ ସ୍କୁଲ, କଲେଜ, ଡାକ୍ତରଖାନା ଏବଂ ବଡ଼ ବଡ଼ ସରକାରୀ ଅଫିସ ପ୍ରଭୃତି ନାଗରିକ ଉପାଦାନ ପୂର୍ଣ୍ଣମାତ୍ରାରେ ବିଦ୍ୟମାନ । ବିଶାଖପଟ୍ଟଣ ସହର ଦୁଇ ଭାଗରେ ବିଭକ୍ତ । ଏକ ଅଂଶ ଓ୍ୱାଲଟିଅର, ଅପର ଅଂଶ ବିଜୟ ନଗର । ବିଜୟ ନଗରରେ ଜଣେ ମହାରାଜା ଅଛନ୍ତି । ପ୍ରଥମ ଶ୍ରେଣୀ କଲେଜଟି ଉକ୍ତ ସଦାଶୟ ମହାରାଜାଙ୍କ ବ୍ୟୟରେ ପରିଚାଳିତ । ବିଜୟ ନଗରଠାରୁ ସାଲୁରର ଦୂରତ୍ୱ ୩୬ ମାଇଲ । ଏ ଅଞ୍ଚଳର ଅପର୍ଯ୍ୟାପ୍ତ ତାଳଗଛ ଦେଖାଯାଏ । ଘନ ସନ୍ନିବିଷ୍ଟ ତାଳତରୁପଂକ୍ତି ଶସ୍ୟ କ୍ଷେତ୍ରରେ ସୀମାବାଡ଼ ହୋଇଅଛି । ଗ୍ରାମ, ବିଲ, ପ୍ରାନ୍ତର ସବୁ ତାଳବନ– ମୟ । ଯେଉଁ ଆଡ଼କୁ ଚାହିଁଲେ ଦୈତ୍ୟରାଜ ପରି ବୋଧହୁଏ । ତାଳଗଛଗୁଡ଼ାକ ଭୀଷଣ ଭୂତମୂର୍ତ୍ତି ପରି ଉଭା, ମସ୍ତକରେ ସ୍ଥୂଳ ରୁକ୍ଷ ଘନକେଶ ଫର ଫର ହୋଇ ଉଡ଼ୁଅଛି । ଏ ଅଞ୍ଚଳର ତାଳ ପତ୍ରରେ ଅନେକ ବ୍ୟବହାର୍ଯ୍ୟ ଶିଳ୍ପ ପ୍ରସ୍ତୁତ ହୁଏ । ତାଳପତ୍ରରେ ଘର ଛୁଆଁ ଯାଏ । ପଲ୍ଲୀର ଅଧିକାଂଶ ଗୃହ ତାଳ ବରଡ଼ା ନିର୍ମିତ । ଅର୍ଦ୍ଧବୃତ୍ତାକାରରେ ତାଳପତ୍ରରେ ଠୋଲ ତିଆରି କରି ସେଥିରେ କୂଅଁରୁ ପାଣି କଢ଼ାଯାଏ । ଗୋଟାଏ ଗୋଟାଏ ଠୋଲରେ କଳସୀଏ ଲେଖାଏଁ ପାଣି ଧରେ । ଏ ଅଞ୍ଚଳର ଭୂମି ଖୁବ୍ ଉର୍ବର । ଶସ୍ୟକ୍ଷେତ୍ରମାନ ବାରମାସଯାକ

ବିବିଧ ଶସ୍ୟରେ ପୂର୍ଣ୍ଣ ଥାଏ । (ରେଳ ମଝିରେ କଦଳୀବନ ଦୂରରୁ ମାଳପାଟ ଶୃଙ୍ଖଳା ପ୍ରାୟ ଅତି ସୁନ୍ଦର ଦିଶେ) ସତେ ଯେପରି ଶ୍ରେଣୀବଦ୍ଧ ବୃକ୍ଷଗୁଡ଼ିକ ଶାଖା ସଞ୍ଚାଳନ ଛଳରେ ପଥିକକୁ ଅତିଥି ହେବା ପାଇଁ ହାତ ଠାରି ଡାକୁଅଛନ୍ତି । ସାନ ସାନ ଗଛରେ ଖୁବ୍ ବଡ଼ ବଡ଼ କାନ୍ଦି କଦଳୀ ଫଳେ । କାନ୍ଦିଗୁଡ଼ିକ ଦୁଇ ପାଖରୁ ଝୁଲିପଡ଼ି ମଝିରେ ବିଚିତ୍ର ମେହେରାବଯୁକ୍ତ ମନୋରମ କୁଞ୍ଜ ସୃଷ୍ଟି କରିଥାଏ । ସେ ଶୋଭା କେବଳ ଉପଭୋଗ୍ୟ, ତୂଳିକାରେ ସେ ଦୃଶ୍ୟଚିତ୍ର ଅଙ୍କିତ ହେବାର ନୁହେଁ ।

ଏ ଅଞ୍ଚଳରେ ବହୁତର ଆଖୁଚାଷ ହୁଏ । କୃଷକମାନେ ବାଡ଼ରେ ପାଳ ଗଦା ପରି ଆଖୁପତ୍ର ଗଦା କରି ଚତୁର୍ମାସ୍ୟାରେ ଜାଳ ସକାଶେ ସାଇତି ରଖିଥାଆନ୍ତି । ପଥପାର୍ଶ୍ୱରେ ତାଳପତ୍ର ଛାଉଣିଗୁଡ଼ିକ ଋଷି ଆଶ୍ରମ ପରି ମନୋରମ ଏବଂ ଶାନ୍ତିପ୍ରଦ । ତେନ୍ତୁଳି ଗଛମାନ ବରଗଛଠାରୁ ବଡ଼ ହୁଏ । ଏହା ସ୍ଥାନୀୟ ଜଳବାୟୁର ପ୍ରଭାବ । ସ୍ଥାନେ ସ୍ଥାନେ କଇଁମି ଆମ୍ବର ମାନ ବଡ଼ ତୋଟା ଦେଖାଯାଏ । ଗଛଗୁଡ଼ିକ ଝାମ୍ପୁରିମୁଣ୍ଡିଆ ଶିଶୁ ପରି ପବନରେ ଫକ୍ ଫକ୍ ହୋଇ ନାଚିଉଠୁଥାନ୍ତି । ଲଙ୍କାଆମ୍ବ ତୋଟାର ମଧ୍ୟ ଅଭାବ ନାହିଁ । ପଥ ପାର୍ଶ୍ୱର ପ୍ରାକୃତିକ ଦୃଶ୍ୟ ନେତ୍ରରସାୟନ ଏବଂ ମନୋମୁଗ୍ଧକର ।

[2]ସାଲୁରରେ ଜଣେ ଓଡ଼ିଆ ରାଜା ଅଛନ୍ତି । ତାଙ୍କର ଅଧିକାଂଶ ପ୍ରଜା ତେଲୁଗୁ । ସାଲୁର ପରି ମହଙ୍ଗା ସ୍ଥାନ ଭୂମଣ୍ଡଳରେ ଅଛି କି ନାହିଁ ସନ୍ଦେହ, ବୋଧ ହୁଏ ନଅଙ୍କ ଦୁର୍ଭିକ୍ଷ ସେଠାରେ ବସା କରି ରହିଛି । ପାନ ପଇସାରେ ଖିଲେ, ଏହିଥିରୁ ଅନ୍ୟାନ୍ୟ ପଦାର୍ଥର ମୂଲ୍ୟ ଅନୁମେୟ । ହୋଟେଲରେ ଥରକୁ ପଚିଶ ପଇସା ଦେଇ ଉପବାସ ବ୍ରତ ଧାରଣ କରିବାକୁ ହୁଏ । ଅନ୍ନଦେବତାଙ୍କୁ କେବଳ ସ୍ପର୍ଶ କରି ତାଙ୍କର ଗୌରବ ରକ୍ଷା କରିବାକୁ ହୁଏ, ଉଦରସ୍ଥ କରି-ବାର ସାଧ ନାହିଁ । ଅନ୍ନବ୍ୟଞ୍ଜନ ମିଶି ପେଟେ, ଲୁଣି, ଲଙ୍କାମରିଚ, ଖଟା, ହେଙ୍ଗୁ ଏବଂ ମେରଣିଙ୍ଗାପତ୍ର ପ୍ରାୟ ତାହାର ଅର୍ଦ୍ଧେକ । ଉପାଦାନ ମାତ୍ର ହୋଇଗଲା, ସ୍ୱାଦୁ ଏବଂ ରୁଚିର କଥା ନ କହିବା ହିଁ ନିରାପଦ । ଲଙ୍କାମରିଚ ପୃଷ୍ଠରେ ଶତପୃଷ୍ଠିତ ତରବାରୀ ଭୃଣ୍ଡିକୁ ନେଇଲକ୍ଷଣି ନେତ୍ରରୁ ଶ୍ରାବଣର ଧାର ଗଡ଼-ପଡ଼େ । ଦୁଷ୍ଟ ପିଲା ଅବଧାନଠାରୁ ଗ୍ରୁଠି ଖାଇ "ଉହୁ" ହେଲା ପରି ଭୋଜନ କର୍ତ୍ତାର ପଞ୍ଚଆତ୍ମା ଶୀତଳ ହୋଇଯାଏ । ଦକ୍ଷିଣଦେଶ ହୋଟେଲର ବିଶେଷତ୍ୱ, ଏହି ଯେ, ଥରେ ସେଥିରେ ଆହାର କଲେ ଖାଦକର ସପ୍ତପୁରୁଷ ପର୍ଯ୍ୟନ୍ତ

କେହି ହୋଟେଲର ସୀମା ସ୍ପର୍ଶ କରିବାକୁ ସାହସୀ ହେବେ ନାହିଁ । ଗୃହର ଗୁଣ ବର୍ଣ୍ଣନା କରିବାକୁ ଉପଯୁକ୍ତ ଭାଷାର ଏକାନ୍ତ ଅଭାବ । ଗୃହୁତ ଚକ୍ରବର୍ତ୍ତୀଙ୍କ ତପସ୍ୟା କରି କେ ଜାଣି ଦକ୍ଷିଣ ଦେଶଠାଯାକ ଏକଛତ୍ର ଆଧିପତ୍ୟ ବିସ୍ତାର କରି ବସିଅଛି । ବ୍ୟଞ୍ଜନ ମଧ୍ୟରେ ସେ ସୌଭାଗ୍ୟବାନ ।

ସାଲୁରଠାରୁ ଜୟପୁର ପ୍ରାୟ ୭୫ ମାଇଲ । ଛ'ମାଇଲ ସମଭୂମିରେ ଯିବାକୁ ହୁଏ । ଅବଶିଷ୍ଟ ପୂର୍ବଘାଟ ପର୍ବତର ଘାଟି ପଥରେ ଅତିକ୍ରମ କରାଯାଏ । ପ୍ରାୟ ପଚିଶ ବର୍ଷ ପୂର୍ବେ ମାନ୍ଦ୍ରାଜ ସରକାର କୋଡ଼ିଏ ଲକ୍ଷ ଟଙ୍କା ବ୍ୟୟରେ ଏହି ଘାଟିପଥ ନିର୍ମାଣ କରାଇଥିଲେ । ସାଲୁରଠାରୁ ଜୟପୁରକୁ ପ୍ରତ୍ୟହ ନିୟମିତ ରୂପେ ମୋଟର ବସ ଯାତାୟାତ କରେ । ୩୦୦୦ ଫୁଟ ଉଚ୍ଚ ପର୍ବତ ଉପରେ କପରି ଅପୂର୍ବ କୌଶଳରେ ପଥ ନିର୍ମିତ ହୋଇଅଛି, ତାହା ଦେଖିଲେ ମନେ-ହୁଏ, ବୋଧହୁଏ ବିଜ୍ଞାନର ଅସାଧ୍ୟ କିଛି ନାହିଁ । ପଥେ ଯେପରି ତାହା ମାୟାର ସରଣୀ । ଘାଟିପଥ ଘୂରି ଘୂରି ପର୍ବତ ଚୂଡ଼ାକୁ ଉଠିବାର ଦୃଶ୍ୟ ଅତୀବ ଲୋଭ-ନୀୟ । ପଥେ ଯେପରି ଫଣିଭୂଷଣ ଶିବଙ୍କ ଜଟାମୁକୁଟରେ ମଣିଭୂଷଣ ସର୍ପ ଜଡ଼ି-ହୋଇ ରହିଅଛି । ଅଥବା ଯୋଗୀବର ପର୍ବତର କଷାୟ ଉଷ୍ଣୀଷ ଶ୍ଳଥ ହୋଇ ପଡ଼ିଅଛି । ସ୍ଥବିରତାସୁଲଭ ଶିରାଳ ଦେହର ଶିରକୁ ସୂଚନା ବୋଲି ସଙ୍କେତରେ ନିର୍ଦ୍ଦେଶ କରୁଅଛି । ଘାଟିପଥ ଯେପରି ଉଲ୍ଲାସପ୍ରଦ, ସେହିପରି ଭୀତିଜନକ, ମାତ୍ର ଦୃଶ୍ୟ ଅତି ଚମତ୍କାର । ଭୀଷଣତା ବିନା ସୌନ୍ଦର୍ଯ୍ୟର ମହତ୍ତ୍ୱ, ଅନନ୍ତ ବାରିଧି ତୁଙ୍ଗତରଙ୍ଗତାଣ୍ଡବରେ ଭୀଷଣ ହୋଇ ନ ଥିଲେ ଏତେ ସୁନ୍ଦର ହୋଇଥାଆନ୍ତା କି ? ଘାଟିର ଏକପାର୍ଶ୍ୱରେ କାଟିହେଲା ପ୍ରାୟ ପର୍ବତ ଠିଆ ହୋଇଅଛି, ଅନ୍ୟ ପାର୍ଶ୍ୱର ଗଭୀରତା ଏତେ ଯେ, ସେଠାକୁ ଦୃଷ୍ଟିରେଖା ପାଏ ନାହିଁ । ବାସ୍ତବରେ ଘାଟିର ସଙ୍କଟନାମ ସାର୍ଥକ । ସେଠାରୁ ଖସିଲେ ବଳରାମଙ୍କ ସ୍ୱ-ଧାମ ବ୍ୟତୀତ ଅନ୍ୟତ୍ର ଫେରିବା ଅସମ୍ଭବ; କିନ୍ତୁ ସେ ଆଶଙ୍କା କଳ୍ପନା ମାତ୍ର । ମୋଟର ଚାଳକ-ମାନେ ଅଦ୍ଭୁତ ସାହସ ଏବଂ କୌଶଳରେ ଯାନ ଚଳାଇନିଅନ୍ତି । ତଳକୁ ଚାହିଁ ଦେଲେ ଅତି ଦୁଃସାହସୀର ସୁଦ୍ଧା ମୁଣ୍ଡ ଘୂରାଇ ଦିଏ, ମାତ୍ର କିଛି ଅମଙ୍ଗଳ ଘଟି ନାହିଁ । ସ୍ଥାନେ ସ୍ଥାନେ ପ୍ରକାଣ୍ଡ ପ୍ରସ୍ତର ଖଣ୍ଡ ଗିରିଗାତ୍ରରେ ଅଟକି ରହି ପତନର ଭୟ ଦେଖାଉଅଛନ୍ତି, ମାତ୍ର ପ୍ରକୃତରେ ଗଡ଼ିଆସୁ ନାହାନ୍ତି । ମହାଜନମାନେ ଧମକ ଦିଅନ୍ତି ଦିନା, ମାତ୍ର ଅନିଷ୍ଟ କରନ୍ତି ନାହିଁ । ତାଙ୍କର ଠେମକାଣ ଗୋଟାଏ ଅଦ୍ଭୁତ ନିର୍ଦ୍ଦୋଷ ରସିକତା । ଘାଟିପଥ ଉଚ୍ଚାବଚତନ୍ମୟ । ଉନ୍ନତର ପଥ

ଯେପରି ଦୁର୍ଗମ ଅଧୋଗତିର ପଥ ସେହିପରି ସହଜ, ଏହି ସତ୍ୟଟିକୁ ବାଉଁଶ ଘାଟିପଥ ନୀରବରେ ପ୍ରଚାର କରୁଅଛି । ଖାଲି ପ୍ରଚାର କରୁନାହିଁ, ତାହାର ଆଦର୍ଶ ମଧ୍ୟ ଦେଖାଉଅଛି । ଅବନତିରେ ପଥ ବନ୍ଧୁଶୂନ୍ୟ ହେତୁ ଅଧିକାଂଶ ତାହା ପ୍ରତି ଅନୁରକ୍ତ ହୁଅନ୍ତି । ହେଁଲୁ ସ୍ୱଭାବକର୍ମ ପଥରେ ମୋଟର ବସ ଯାଉଥିବା ବେଳେ ନୀଳ ଆକାଶରେ ଉଡାଜାହାଜ ଉଡ଼ିଯାଉଥିବା ଭଳି ତାକୁ ଦେଖାଯାଏ । ଘାଟିର ଦୃଶ୍ୟ ବର୍ଣ୍ଣନାତୀତ । ଉପରକୁ ଉଠି ତଳକୁ ଚାହିଁ ଦେଖିଲେ ସ୍ୱପ୍ନରାଜ୍ୟରେ ଉପସ୍ଥିତ ହେଲ ପରି ପ୍ରତୀୟମାନ ହୁଏ । ବସନ୍ତକାଳରେ ସେଠାରେ ଶୋଭା ଉପରେ ମହାଶୋଭା ବୃଷ୍ଟି ହୁଏ । କେଉଁଠାରେ ସ୍ୱର୍ଣ୍ଣବର୍ଣ୍ଣ ଜାତ "କବକ" ଫୁଲ ଫୁଟି ବହୁଦୂରଯାଏ ଘାଟିର ଉଭୟ ପାର୍ଶ୍ୱ ଆଲୋକିତ କରି ରହିଅଛି । କେଉଁଠାରେ ପୀତଶାଳ୍ମଳୀ ବସନ୍ତରାଜର ବିଜୟପତାକା ଉଡାଇ ଅଛି । କେତେ ସ୍ଥାନରେ ଲତାପଲାଶ ଆପାଦମସ୍ତକ ପୁଷ୍ପମଣ୍ଡିତ ହୋଇ ସାଗରବେଳାରେ ପ୍ରବାଳଲତା ମାଡ଼ିଲ ପ୍ରାୟ ଦିଶୁଅଛି । କେଉଁଅଂଶରେ ବିବିଧ ବର୍ଣ୍ଣର ପୁଷ୍ପ ବହୁଳ ଭାବରେ ଫୁଟି ବେତରାଜରେ ତରଙ୍ଗ ଉଠୁଥିଲ ଭଳି ଉପମା ଧାରଣ କରିଅଛି । ବ୍ୟାଘ୍ରଧାତୁକୀ ପୁଷ୍ପିତା ଧାତୁକୀ ଗୁଚ୍ଛମାଳାରେ ମଣ୍ଡିତ ବନ୍ୟବାଳା ପ୍ରାୟ ଚିତ୍ରିତଗୁଚ୍ଛରେ ଉଦ୍ଭାସିତ ଜ୍ୟୋତିର୍ମୟ ହାସ୍ୟ ବିସ୍ତାର ପୂର୍ବକ ବ୍ୟାଘ୍ରକୁଳକୁ ଭୟ ଦେଖାଉଅଛି । ଧାତୁକୀ ଫୁଲରେ ଅଧିକ ପରିମାଣରେ ମହୁ ଥାଏ । ତାହା ଖୁବ୍ ମଧୁର ଏବଂ ଅତି ଅଠାଳିଆ । ସେ ଅଠା ଲଗିଲେ ବାଘ ଦେହରେ ଘା' ହୋଇଯାଏ । ଘା କୁଣ୍ଡାଇହେଲେ ବାଘ ତାକୁ କାମୁଡ଼ି ଆହୁରି କ୍ଷତବିକ୍ଷତ କରିପକାଏ; ଶେଷରେ ଘାରେ ପୋକ ପଡେ, ବାଘ ମରି-ଯାଏ । ଏହି ହେତୁ ଫୁଲ ଫୁଟିଥିବାବେଳେ ବାଘ ଧାତୁକୀବଣକୁ ଭୟରେ ପଶେ ନାହିଁ । ବସନ୍ତକାଳରେ ଧାତୁକୀ ଫଳ ଫୁଟେ । ପଥ ପାର୍ଶ୍ୱରେ ଆମ୍ବ, ପଣସ, ପିଜୁଳିର ସୁବିସ୍ତୀର୍ଣ୍ଣ ତୋଟା ପ୍ରଚୁର ଅଛି । ସେଠାରେ ବନ୍ୟ ସଭ୍ୟତାରେ ନାଗରିକ ସଭ୍ୟତା ମିଶାମିଶି ହୋଇଅଛି । ବନ୍ୟତରୁ ଗ୍ରାମ୍ୟତରୁ ଉଭୟେ ପ୍ରଣୟ-ପାଶରେ ଛନ୍ଦାଛନ୍ଦି ହୋଇଅଛନ୍ତି । ଏ ମିଳନ ବଡ ସୁନ୍ଦର, ବଡ ମଧୁର । ବନ୍ୟତରୁର ସଙ୍କୋଚ ନାହିଁ କିମ୍ବା ଗ୍ରାମ୍ୟତରୁର ସଭ୍ୟତା ଦମ୍ଭ ନାହିଁ । ଉଭୟେ ପ୍ରାଣେ ପ୍ରାଣେ ମିଶି ବନ୍ଧୁଭାବରେ ପରସ୍ପରକୁ ପ୍ରେମାଲିଙ୍ଗନ କରିଅଛନ୍ତି ।

ଘାଟି ଉପରୁ ତଳକୁ ଚାହିଁଲେ ନଦୀମାନେ ଶାଖା ପ୍ରଶାଖାବିଶିଷ୍ଟ ରୌପ୍ୟ-ଲତା ପରି ଅତି ସୁନ୍ଦର ଦିଶନ୍ତି । ପ୍ରତୀତହୁଏ, ଗିରିଯୋଗୀର ପରିପକ୍ୱ ଚନ୍ଦ୍ରାର

ଅମର ଭାବଧାରା ନଦୀରୂପରେ ବହିଯାଉଅଛି କି ? କିମ୍ବା ତାହାର ପବିତ୍ର ବିଭୂ-
ତପ୍ରେମ ଅଶ୍ରୁଧାରାରେ ପ୍ରବାହିତ ହେଉଅଛି । ନିମ୍ନସ୍ଥ ପାଦପବୃନ୍ଦ ବାମନ ମୂର୍ତ୍ତି
ଧରିଲା ପ୍ରାୟ ଉପରୁ ଦେଖାଯାଏ । ଗ୍ରାମଗୁଡ଼ିକ ଭୂଇଁ ପଲପରି କ୍ଷୁଦ୍ର ଦିଶେ । ବୃଦ୍ଧ
ଶିଶୁ ପରି ଦିଶେ. ଯୁବକ ବି ଶିଶୁ ପରି ଦିଶେ । ସତେ ଯେପରି ସେଠାରେ ଶିଶୁ
ପ୍ରଦର୍ଶନୀ ବସିଅଛି । ଗୋରୁପଲ ଚତୁର୍ଦ୍ଦିସ୍ୟାରେ ବେଙ୍ଗଛତାର ସାଦୃଶ୍ୟ ଧାରଣ
କରେ । ଚନ୍ଦ୍ରଜ୍ଞାନ ମହାମାନବମାନେ ଉନ୍ନତିର ଚରମସୀମାକୁ ଉଠିଲେ ସେମା-
ନଙ୍କ ନେତ୍ରରେ ତଳସ୍ଥ ସଂସାରବ୍ୟାପାର ଏହିପରି କ୍ଷୁଦ୍ର ନଗଣ୍ୟ ଦେଖାଯାଏ ।
ଘାଟିପଥ ପ୍ରଶସ୍ତ, ସେଥିରେ ଏକ ସଙ୍ଗରେ ଦୁଇଟୋଟା ମୋଟର ଅନାୟାସରେ
ଯାତାୟାତ କରିପାରେ । ପର୍ବତ କାଟି ଘାଟିପଥକୁ ଆହୁରି ପ୍ରଶସ୍ତ ଏବଂ ନିରାପଦ
କରିଯାଉଅଛି । ଶତଶତ କୁଲି ପଥରକଟାରେ ଲାଗିଅଛନ୍ତି, ପାଖରେ କମାର-
ଶାଳ ଲାଗିଛି । ଯେଉଁ ଯନ୍ତ୍ରମାନ କୁନ୍ଥା ହୋଇଯାଉଅଛି, ସେହିକ୍ଷଣି ଶାଣରେ
ବସାଇ ତାହାର ଧାର ଚଢାଇ ଦିଆଯାଉଅଛି । ସ୍ଥାନେ ସ୍ଥାନେ କଳାମୁଗୁନି
ପଥର କଟାଯାଉଅଛି । ତାହା ଅତି କଷ୍ଟସାଧ୍ୟ । ଏହି ଘାଟି ଜୟପୁରର ଏକ-
ମାତ୍ର ବାଣିଜ୍ୟପଥ । ଶଗଡ ଓ ବଳଦ ପିଠିରେ ନାନାବିଧ ପଣ୍ୟଦ୍ରବ୍ୟ ଘାଟି-
ପଥରେ ଚାଲିଅଛି, ବଡ ବଡ ମୁଣ୍ଡିକାଠ, ସିଲିପଟ ଏବଂ ଧାନ ବିଶେଷ ପରି-
ମାଣରେ ରପ୍ତାନି ହୁଏ । ଏ ଅଞ୍ଚଳରେ ଗାଈ ସୁଢା ଛେଳି ବୁହନ୍ତି, ଏହା
ଗୋଟାଏ ନିଷ୍ଠୁର ବର୍ବର ପ୍ରଥା । ପାଟଲବର୍ଣ୍ଣର ଗୋରୁ ସଂଖ୍ୟା ସବୁଠାରୁ
ଅଧିକ । ଛେଳି ବଳଦର ଶିଙ୍ଗରେ ଘାଲୁଘୁଲ ଏବଂ ମୟୂରପୁଚ୍ଛ ମୁକୁଟ ଆକା-
ରରେ ବନ୍ଧା ହୋଇଥାଏ । ବାୟୁରେ ଆନ୍ଦୋଳିତ ହୋଇ ତାହା ସଚଳ ଇନ୍ଦ୍ର-
ଧନୁ ପରି ଦେଖାଯାଏ । କଉଡ଼ିକମଯୁକ୍ତ ପଲାଣ, ପେଟୀ, ଲଞ୍ଜା, ଝୁଣ୍ଡି ପ୍ରଭୃତି
ବଳଦଗୁଡ଼ିକୁ ଅଳଙ୍କାର ପରି ଖୁବ୍ ମାନେ । ବନ୍ୟଜାତିର ପୁରୁଷମାନେ
ଲେଙ୍ଗୁଟିମାରି ହାତରେ ଲାଉତୁମ୍ବା ଧରି ଦଳ ଦଳ ହୋଇ ଚାଲିଆସନ୍ତି । ଲାଉ-
ତୁମ୍ବା ସେମାନଙ୍କ ଜଳପାତ୍ରର କାର୍ଯ୍ୟକରେ ।

ଘାଟି ଉପରୁ ଚାହିଁଲେ ଚାରିଆଡେ ବହୁସ୍ତର ଗିରିମାଳାର ସୁନ୍ଦର ଦୃଶ୍ୟ
ଦୃଷ୍ଟିର ତୃପ୍ତି ସମ୍ପାଦନ କରେ । ସଂସାର ମାୟା ଜାଲରେ ଛନ୍ଦିହେଲା ପ୍ରାୟ
ଜୟପୁର ରାଜ୍ୟ ପର୍ବତଜାଲରେ ଛନ୍ଦିହୋଇଅଛି । ରାଜ୍ୟର ତିନିଭାଗ ଭୂମି
ପର୍ବତମୟ । ଏହି ସବୁ ପର୍ବତରେ ମହାର୍ଘ ଦୁର୍ଲ୍ଲଭ ସମ୍ପତ୍ତି ରୂପାନ୍ତରିତ ହୋଇ

ରହିଛି । ଅନେକ ମୂଲ୍ୟବାନ୍ କାଠ ଏବଂ ପଥର ଏହାର ପ୍ରକାଶ୍ୟ ହେବ; ମାତ୍ର ଗୁପ୍ତଭାବେ ଭିତରେ ଅଛି । ଶାଳ, ପିଆଶାଳ, ଶିଶୁ, ମହୁଲ ପ୍ରଭୃତି ବୃକ୍ଷ ପରି ସ୍ଥୂଳ କମ୍ବୁକାଣ୍ଡ ବୃକ୍ଷ ଅନ୍ୟତ୍ର ଦୁର୍ଲ୍ଲଭ, ଅନ୍ୟ କୌଣସି ସୁବିଧା ଜନକ ସ୍ଥାନ ହୋଇ-କେବଳ ଧାତୁକି ଫୁଲରୁ ସହସ୍ର ସହସ୍ର ଟଙ୍କା ଅର୍ଜ୍ଜ ହୋଇଥାନ୍ତା । ଧାତୁକି ଫୁଲ ଅନେକ ଔଷଧରେ ବ୍ୟବହୃତ ହୁଏ ଏବଂ ସେଥିରେ ଅଧିକ ଟେକ୍ସାର ରଙ୍ଗ ମଧ୍ୟ ପ୍ରସ୍ତୁତ ହୁଏ ।

୩୦୦୦ ଫୁଟ ଉଚ୍ଚ ପର୍ବତ ଉପତ୍ୟକାରେ ଗ୍ରାମ, ଶସ୍ୟକ୍ଷେତ୍ର, ପର୍କୋର ଅଫିସ ଏବଂ ପ୍ରକୃତିର ନାନାବିଧ ସୌନ୍ଦର୍ଯ୍ୟ ଦେଖିଲେ ଚିତ୍ତ ଅନ୍ତର୍ଯ୍ୟାତେ ଅଭିଭୂତ ହୋଇଯାଏ । ମନେହୁଏ ଯେପରି ସ୍ୱପ୍ନ ବା ଭୋଜବିଦ୍ୟାଳୟରେ ଏହା ସବୁ ଦେଖାଯାଉଅଛି କିମ୍ବା ଏହା ଗୋଟାଏ ଅଦୃଷ୍ଟ ଅଶ୍ରୁତ ସ୍ୱତନ୍ତ୍ର ସୃଷ୍ଟି ଦର୍ଶକ ସମ୍ମୁଖରେ ଅନାବୃତ ହୁଏ । ଅଧିତ୍ୟକାରେ ନୀଳାମ୍ବୁଦଙ୍କର ଏହି ଚଞ୍ଚଳ ଲୀଳା ଦେଖିଲେ ମନ ସ୍ୱତଃ ଭାବପ୍ରବଣ ହୋଇ ଉଠେ । ଦର୍ଶକ ମାୟା ରାଜ୍ୟରେ ବିଚରଣ କଲା ଭଳି ଜ୍ଞାନ କରେ । ଅପୂର୍ବ ରାଜ୍ୟରେ ସବୁ ଅପୂର୍ବ । ଏ ଅଞ୍ଚଳରେ ନାନା ପ୍ରକାର ନୂତନ ପକ୍ଷୀ ଦେଖାଯାଆନ୍ତି, ଯାହା ପରି ଏକା ଜାତିର କାଉ ଅଛନ୍ତି; ସେମାନଙ୍କ ବର୍ଣ୍ଣ ଶୁକ୍ଳ, ପେଟ ଧଳା । ସେହି ପେଟ ମଧ୍ୟରେ ଡାମରା କାଉର କର୍କଶ ଶବ୍ଦର ଆଭାସ ମିଳେ । ଏ ପକ୍ଷୀ ଭଲ ଅପେକ୍ଷା ବଡ଼ । କେତେ ଅଦୃଷ୍ଟପୂର୍ବ ସୁନ୍ଦର ପକ୍ଷୀ ତପସ୍ୱୀଛନ୍ଦରେ ସଙ୍ଗୀତ ଗାନ କରନ୍ତି । ପକ୍ଷୀ-ଭାଷା ପକ୍ଷୀମାନେ ବୁଝନ୍ତି; ମାତ୍ର ସ୍ୱର ବଡ଼ ମଧୁର । ସ୍ୱରପ୍ରିୟ ମାନବ ସେହି ସ୍ୱରରେ ମୁଗ୍ଧ ହୁଏ । ନବାଗତ ଦର୍ଶକ ସେ ଅବୋଧ ସଙ୍ଗୀତର ମଧୁର ମାଦ-କତାରେ ଏଭଳି ବିଭୋର ହୋଇଉଠେ ଯେ, ସେ ସ୍ଥାନ ଛାଡ଼ି ସହଜେ ଅନ୍ୟତ୍ର ଯିବାକୁ ଏକାନ୍ତ ସଙ୍କୁଚିତ ହୁଏ । ସେଠାରେ ସେହି ପକ୍ଷୀମେଳର ସଙ୍ଗୀ ହୋଇ ରହିବାକୁ ଇଚ୍ଛାହୁଏ । ମନ ସେମାନଙ୍କୁ ବନ୍ଦୀ କରି ରଖିବା ବିଷୟରେ ସେ ସ୍ଥାନର ପ୍ରଭାବ ଅଦ୍ୱିତୀୟ ।

ଘାଟି ପଥରେ ମୋଟର ଯାନରେ ଗଲାବେଳେ ଗୋଟାଏ ମଧୁର ଆଘ୍ରାଣ ବୋଧ ହୁଏ । ପଥ ଆକୁଳ ଫୁଲର ମଧୁର ସୌରଭରେ ଆମୋଦିତ । କେଉଁ ଅଂଶ ଅଜ୍ଞାତନାମା ଶୁଭ୍ରପୁଷ୍ପରାଜି ଦ୍ୱାରା ଆଚ୍ଛାଦିତ । କେଉଁଠି ବକୁଳ ଏବଂ

ବଣରାଜି ସ୍ୱଭାବସୁନ୍ଦରୀ ବନ ପ୍ରକୃତିର ନାସାରେ ସୁବର୍ଣ୍ଣ ବସଣୀ ପିନ୍ଧାଇ ଦେଇ-
ଅଛି । ଭ୍ରମର ସେ ବସଣୀର ମାଳ ମଧ୍ୟମଣି ପ୍ରାୟ ସୁନ୍ଦର ଦିଶୁଅଛି । ଦୋ ଦୂର
ପବନ ପୁଷ୍ପପରିମଳ ବୋଳହୋଇ ଧୀରେ ଧୀରେ ବହୁଅଛି । ସେ ସ୍ଥାନର ପବନ
ପାର୍ଥିବ ବାସନା, କାମନାର ଉତ୍ତାପରେ ଉଷ୍ଣ ନୁହେ, ତାହା ସ୍ୱଚ୍ଛ, ପୂତ, ଅମୃତ
ପରି ମଧୁର ଏବଂ ଶୀତଳ । ସେ ବାୟୁ ଦୁଶ୍ଚିନ୍ତାକଳୁଷିତ ମନକୁ ଶୁଦ୍ଧପୂତ ଏବଂ
ନିର୍ମଳ କରିଦିଏ । ସେଠାରେ ସ୍ୱାର୍ଥ, କ୍ରୋଧ, ଦ୍ୱେଷ ଏବଂ ପରଶ୍ରୀକାତରତାର
ପ୍ରଚଣ୍ଡ କୋଳାହଳ ନାହିଁ, ତାହା ଶାନ୍ତିମୟ ପବିତ୍ର ଦେବଧାମ । ମନୁଷ୍ୟ
ସେଠାରେ ଦେବତ୍ୱ ଲାଭ କରେ । ପୃଥିବୀସୁଲଭ ମାୟା, ମମତା ସ୍ନେହର ନଶ୍ୱ
ବନ୍ଧନ ସେଠାରେ ନାହିଁ । ଅଛି କେବଳ ଅନାବିଳ ଦେବତ୍ୱ ଏବଂ ଶାଶ୍ୱତ ଧର୍ମ
ଭାବ । ସ୍ଥାନ ପ୍ରଭାବରେ ମନବର ଦୁଷ୍ଟ ପ୍ରକୃତି ସୁଦ୍ଧା ସେଠାରେ ଧର୍ମପ୍ରବଣ
ହୋଇଉଠେ । ମାନବର କ୍ଷୁଦ୍ରତା ସେଠାରେ ମିଳାଇଯାଏ ଏବଂ ପ୍ରକୃତ ମହତ୍ତ୍ୱ
ପ୍ରାଣରେ ଫୁଟିଉଠେ । ମାନବ ସଙ୍କୀର୍ଣ୍ଣତା ଛାଡ଼ି ବିଶ୍ୱପ୍ରେମରେ ପ୍ରମତ୍ତ ହୁଏ ।
ତାହାର ଦୁର୍ବଳତା ସେହି ବିଶ୍ୱପ୍ରେମରେ କୁଆଡେ ଉଭେଇଯାଏ । ସେ ନିଜକୁ
ଚିହ୍ନିପାରେ ଏବଂ ନିଜର ଶକ୍ତି ବୁଝିପାରେ । ସେ ମହାଶକ୍ତି ଦେବୀଙ୍କର ପୁତ୍ର
ହୀନତା, ଦୁର୍ବଳତା ତାହା ସ୍ୱଭାବର କଳଙ୍କ, ଏହି ସତ୍ୟ ସେ ହୃଦୟଙ୍ଗମ କରି
ବାକୁ କ୍ଷମ ହୁଏ । ସେ ଅମୃତର ପୁତ୍ର, ତାହାର ମୃତ୍ୟୁ ନାହିଁ; ଏ ବିଷୟରେ
ସନ୍ଦେହଶୂନ୍ୟ ହୁଏ । ଯେତେବେଳେ ସେ ବୁଝିପାରେ, ତାହାର ନିଜଠାରୁ ଶିଖିବା
ବିଷୟ ଅନେକ ଅଛି । ସହସ୍ର ପୁସ୍ତକ ପାଠରେ, କୋଟିଏ ଗୁରୁ ଉପଦେଶରେ
ସେ ଯେତେ ଶିଖେ, ନିଜଠାରୁ ସେଥିରୁ ଅଧିକ ଶିଖେ । ତାହାର ଶରୀରମଧ୍ୟ
ଭିତରେ ଯେଉଁ ଗୁରୁ ଅଛନ୍ତି ତାଙ୍କୁ ସେ ଚିହ୍ନିପାରେ ଏବଂ ତାଙ୍କର ଅନ
ମହିମା ପ୍ରାଣରେ ଉପଲବ୍ଧି କରିପାରେ । ସୁତରାଂ ସେ ଅପାର ଆନନ୍ଦ ଅନୁ
ଭବ କରି ସେହି ପରମଗୁରୁଙ୍କ ପାଦପଦ୍ମରେ ଶରଣ ପଶେ । ସେହି ସର୍ବଜ୍ଞ ମ
ଗୁରୁଙ୍କ ନାମ—ଶ୍ରୀମତ୍ ସ୍ୱାମୀ ବିବେକାଶ୍ଚର୍ଯ୍ୟ ।

ଏହି ଘାଟି ଜୟପୁରର ନନ୍ଦନକାନନ ବା ଚୈତ୍ରରଥ ବନ । ଉଦ୍ଭି
ଜଗତରେ ଯେତେ ପ୍ରକାର ତରୁ, ଲତା, ଗୁଳ୍ମ, ତୃଣ, ଶୈବାଳ ପ୍ରଭୃତି ଅ
ତାହା ପ୍ରାୟ ଏହିଠାରେ ଏକାଧାରରେ ବିଦ୍ୟମାନ । ଏଠାରେ ଯାହା
ତାହା ବୋଧ ହୁଏ ସୃଷ୍ଟି ହୋଇ ନ ଥିବ । ବୈଚିତ୍ର୍ୟ ଏବଂ ସୌନ୍ଦର୍ଯ୍ୟର ମଧ
ସମାବେଶ ଏହିଠାରେ । ସ୍ୱର୍ଗର ନିଶୁଣୀ ପ୍ରାୟ ଗିରିମାଳ ନେତ୍ରାନ୍ତରାଳରୁ ଚ

ବାଳ ଯାଏ ବିସ୍ତୃତ । ଏଠାରେ ବିଗତର ଚକ୍ରବାଳ ନାହିଁ, ଗିରିମାଳହିଁ ଚକ୍ରବାଳ । ବିଶାଳ କନ୍ଦରମାନ ଭୀଷଣ ଜନ୍ତୁ ମୁଖ ବ୍ୟାଦାନ କଲା ପରି ଦିଶୁଅଛି । ବୋଧ ହୁଏ ସେଗୁଡ଼ିକ ଗିରିରାଣୀଙ୍କର ନିଭୃତ ଅନ୍ତଃପୁର । ବାସ୍ତବରେ ଏହି କନ୍ଦରମାନ ଆର୍ଯ୍ୟଶାସ୍ତ୍ର ପୁରାଣର ଅନୁଶୀଳନଶାଳ । ଆର୍ଯ୍ୟ ଧର୍ମମାନ ଏହିଠାରୁ ଜାତ ହୋଇ ଜଗତରେ ପୂଜିତ ଏବଂ ପରିବ୍ୟାପ୍ତ ହୋଇଅଛି । ସ୍ଥାନେ ସ୍ଥାନେ ଅରଣ୍ୟ ଏତେ ଗମ୍ଭୀର ଏବଂ ନିର୍ଜନ ଯେ, ସେଠାରେ ନିସ୍ତବ୍ଧତାର ଭୈରବ ରାଗିଣୀ "ସାଏଁ ସାଏଁ" ଛଡ଼ା ଅନ୍ୟ କିଛି ଶବ୍ଦର ଅସ୍ତିତ୍ୱ ନାହିଁ । ସାଧକ ପକ୍ଷରେ ଏହା ସାଧନର ଉପଯୁକ୍ତ କ୍ଷେତ୍ର । ଭାବୁକ ପକ୍ଷରେ ନିବିଡ଼ ନିକୁଞ୍ଜ ତପ୍ତ ଭବମରୁଭୂମିରେ ଦଗ୍ଧ ଶ୍ରାନ୍ତ ପାନ୍ଥକୁଳର ଶାନ୍ତିମୟ ପାନ୍ଥନିବାସ । ରସିକ ନେତ୍ରରେ କେଳି କୌତୁହଳର ବିଳାସମନ୍ଦିର; ମାତ୍ର ଅରସିକ ଭୀରୁ ନେତ୍ରରେ ଭୀଷଣ ଅରଣ୍ୟ ଛଡ଼ା ଆଉ କିଛି ନୁହେଁ । ସଲପଗଛ ମଦ୍ୟଦାୟୀ ପ୍ରାୟ ନିଶା ଖୋଲରେ ଝୁଲୁଅଛି । ମହୁଲଗଛର ମଦ୍ୟ ବାହାରେ. ତାହା ବନ୍ୟଜାତିର ପ୍ରିୟ ପାନୀୟ । ଏହି ଗଛର ମଞ୍ଜିକୁ ଚୂନା କରି ଯାଉ, ପିଠା ପ୍ରଭୃତି ପ୍ରସ୍ତୁତ କରଯାଏ । ଏହି ବୃକ୍ଷ ତାଳୀପର୍ଯ୍ୟାୟଭୁକ୍ତ । ପଳାଶଗଛ ଉଦ୍ଧତ କ୍ରୋଧୀ ପରି ନିଜର ବକ୍ଷ ଚିରି ନଖ-ପଙ୍କ୍ତି ରକ୍ତାକ୍ତ କରିଅଛି । ଗିରିଚୂଡ଼ାସ୍ଥ କାଞ୍ଚିଆ ପଥରର ଦୃଶ୍ୟ ଅତି ରହସ୍ୟପ୍ରଦ । ତାହା ପଥରରେ ଫୁଲ ଫୁଟିଲା ପରି ଦିଶୁଥାଏ । ଗିରି କାବ୍ୟରେ ଏହା ବିଷମ ସମସ୍ୟା, ଗିରି ଦେହରେ କୃଷିକ୍ଷେତ୍ରର ଶୋଭା ଅନିର୍ବଚନୀୟ । ନବକର୍ଷିତ ଲୋହିତ ବର୍ଣ୍ଣର କିଆରୀମାନ ଭକ୍ତଦ୍ୱାରା ଗିରି ଦେହରେ ନାମାବଳୀ ପ୍ରାୟ ଅଙ୍କାଦିତ । ଉଆଁଶ ମଧ୍ୟସ୍ଥ କ୍ଷୁଦ୍ର ଗୁଳ୍ମଗୁଡ଼ିକ ଅମଳ ସୁରଙ୍ଗ ଦିଶୁଅଛି । ପ୍ରକୃତି ରହସ୍ୟମୟୀ, ସେ ପଥର ଦେହରେ କେତେ ମୂର୍ତ୍ତି ସୃଷ୍ଟି କରିଅଛି, କେତେ ଚିତ୍ର ଅଙ୍କିତ କରିଅଛି, ତାହାର ଇୟତ୍ତା ନାହିଁ । କେଉଁ ପର୍ବତର ଚୂଡ଼ା ହସ୍ତୀ ସଦୃଶ, କେହି ଭଲ୍ଲୁକ ସଦୃଶ, କେହି ସିଂହ ସଦୃଶ, କେହି ବା ଦୁର୍ଦ୍ଧର୍ଷ ଦୈତ୍ୟ ସଦୃଶ । ନାନାରଙ୍ଗର ଶୈବାଳ ପ୍ରସ୍ତର ଉପରେ ମାଡ଼ିଅଛି । କେହି ମଖମଲ ପରି ଚିକ୍କଣ, କେହି ଗାଲିଚା ପରି କୋମଳ, କେହି ବା କମ୍ବଳ ପରି ରୁକ୍ଷ । ଏହିପରି ଦୃଶ୍ୟ ଦେଖି ଦେଖି ଘାଟିପଥ ଅତିକ୍ରମ କଲାବେଳେ ମନ ପୃଥିବୀରେ ଥିଲା ପରି ବୋଧହୁଏ ନାହିଁ । କେଉଁ ଅଦ୍ଭୁତ ରଙ୍ଗିଆ ସ୍ୱପ୍ନ-ରାଜ୍ୟରେ ଯାଇ ନାଚି ଖେଳି ବୁଲୁଥାଏ । ବାସ୍ତବରେ ଏହା ଶୋଭାରାଜ୍ୟ ନୁହେଁ; ସ୍ୱପ୍ନସ୍ୱର୍ଗ । ପକ୍ଷାନ୍ତରେ ଏହା କବିତାମୟ ରାଜ୍ୟ । ଏଠାରେ ପଶୁ ପକ୍ଷୀଙ୍କଣ୍ଠରୁ କବିତାର ଛନ୍ଦ ବାହାରିଆସୁଛି, ପବନ କବିତା ଆବୃତ୍ତି କରୁଛି । ବୃକ୍ଷ ଲତା କବିତା ଗାନରେ ବିଭୋର, ଗୁହା

ମୁଖରେ ଗିରି କବିତା ପାଠ କରୁଅଛି । ପୂର୍ଣ୍ଣ କବିତାମୟୀ; ସ୍ୱୟଂ କବିତାଦେବୀ ଏଠାରେ ଫୁଲ ରୂପ ଧରି ହସୁଅଛନ୍ତି । ଏଠାରେ କବିତା ଉପରେ କବିତା ବର୍ଷି-ଯାଉଅଛି । ଏ କବିତାମୟୀ ରାଜ୍ୟ ଉତ୍କଳ ବିକ୍ରମାହାତ୍ମ୍ୟ ସାହିତ୍ୟ-ସମ୍ରାଟ ରାଜକବି ରାଜର୍ଷି ବିକ୍ରମଦେବଙ୍କ ନିମନ୍ତେ ବିଧିସୃଷ୍ଟ । ବାଣୀବରପୁତ୍ରଙ୍କର ସାରସ୍ୱତ ସିଂହା-ସନ ବାଣୀ ଦେବୀ ଏହିଠାରେ ପ୍ରତିଷ୍ଠିତ କରିଅଛନ୍ତି । ସେହି ଜ୍ୟୋତିର୍ମୟ ସିଂହା-ସନର ବିମଳ ଜ୍ୟୋତିରେ ସମଗ୍ର ଉତ୍କଳ ଆଲୋକିତ । ସୌରଭ ଯୋଗୁ ପୁଷ୍ପ ଧନ୍ୟ ହେଲା ପ୍ରାୟ ବିକ୍ରମ ଦେବଙ୍କ ଯୋଗେ ସିଂହାସନ ଧନ୍ୟ ହୋଇଅଛି । ସେ ଗଜ-ମୋତି, ଏ ଜ୍ୟୋତି; ସେ କବିତା, ଏ ଭାବ; ସେ ପିଣ୍ଡ, ଏ ଆତ୍ମା ।

ଏକ ଦିଗରେ ଅରଣ୍ୟ ଭୀଷଣ ଉଚ୍ଚ ଗିରିଶୃଙ୍ଗର ନିଶୁଣି ପ୍ରାୟ ନେତ୍ରର ଅନ୍ତରାଳକୁ ଉଠିଯାଇଅଛି, ଅନ୍ୟ ପାଖରେ କ୍ରମଶଃ ଗଡ଼ାଣିଆ ଅତଳ ପାତାଳ । ମେଘ ମଣ୍ଡନମଧ୍ୟରେ ସ୍ଥାନେ ସ୍ଥାନେ ମୋଟର ବସ ଖାଲି ମାଖିକି ଉଜାଣି ଚଳେ । ସେତେବେଳେ ଆରୋହୀର ସାହସ ଉଡ଼ିଯାଏ—ଜଣାଯାଏ ସତେ ଯେପରି ମୋଟର ବାସୁକିଭୁବନକୁ ଗଡ଼ିଯିବ; ମାତ୍ର ମୁହୂର୍ତ୍ତକେ ପୁଣି ସଳଖିଯାଏ, ମନେ-ହୁଏ ପ୍ରାଣଟା ଯାଉଁ ଯାଉଁ ଅଟକିଗଲା, ଭୟରେ ଛାତି ଦୁଲୁକଉଠେ, ମୁହୂର୍ତ୍ତକେ ପୁଣି ସେ ଭୟ କୁଆଡ଼େ ଉଭେଇଯାଏ । ମନ ଅପୂର୍ବ ଉଲ୍ଲାସରେ ନାଚିଉଠେ । ନଟବର ମୋଟର ବସ୍ ଆରୋହୀଙ୍କ ସଙ୍ଗରେ ରସିକତା କରେ ପରି । ଖେଳ କୌତୁକ ଜଡ଼ ପଦାର୍ଥ ପ୍ରାଣରେ କି ପ୍ରଭାବ ବିସ୍ତାର କରେ ମଙ୍ଗଳମୟଙ୍କ ମହାକରୁଣାର ଅମ୍ଳାନମାଳ ସଦ୍ୟ ଅନୁଭବ କରି-ପ୍ରାଣ କୃତଜ୍ଞତାରେ ପୂରିଉଠେ ଏବଂ ସାତ୍ତ୍ୱିକଭାବପ୍ରବଣ ହୁଏ । କିନ୍ତୁ ତାହା କ୍ଷଣସ୍ଥାୟୀ । ଭ୍ରାନ୍ତ ମାନବକୁ ବିପଦ ଏହିପରି ସତର୍କ କରାଇଦେଇ ଈଶ୍ୱରସତ୍ତା ସ୍ମରଣ କରାଇଦିଏ । ଏ ହିସାବରେ ବିପଦ ହିଁ ମାନବର ବନ୍ଧୁ । କିନ୍ତୁ ମାନବ ତ ଭୋଳାମହେଶ୍ୱର, ବିପଦ କଟିଗଲା କ୍ଷଣି ପୁଣି ସବୁ ପାଶୋରିଯାଏ । ମନୁଷ୍ୟର ଦୁର୍ବଳତା ଏହି-ଠାରେ । ଅଭ୍ୟାସ ଗୋଟିଏ ମହାଯୋଗ, ତାହାର ଶକ୍ତି ଅମାନୁଷୀ । ଅଭ୍ୟାସ-ଯୋଗ ଅସାଧ୍ୟସାଧନରେ ଦକ୍ଷ । ସେହି ଅଭ୍ୟାସଯୋଗବଳରେ ଚାଳକଟି ଯାତ୍ରୀଙ୍କର ଏଭଳି ଆସନ୍ନମୃତ୍ୟୁର ଆଶଙ୍କା ହେଉନଥିବ । ସେମାନେ ଅଭ୍ୟାସ-ଯୋଗୀ । ତେବେ ଯୋଗୀଦେହ ଲାଭର ଏତେ ସହଜ ଉପାୟ ଥାଉଁ ଥାଉଁ ଯୋଗାଭିଳାଷୀମାନେ ଗ୍ରନ୍ଥସାଗର ମନ୍ଥନକରି ଆୟୁ କ୍ଷୟ କରନ୍ତି କାହିଁକି ? ଯେ ଯାହା ହେଉ ଅଭ୍ୟାସଯୋଗ ସୁପ୍ତାବସ୍ଥାରେ ସୁଦ୍ଧା ଅଭ୍ୟସ୍ତ ଉପରେ ପ୍ରଭାବ

ହସ୍ତାର୍ପଣ କରେ । ଗୋଟିଏ ପ୍ରତ୍ୟକ୍ଷ ଘଟଣା ଏସମ୍ବନ୍ଧରେ ଉଲ୍ଲେଖଯୋଗ୍ୟ । ଜଣେ ପେନ୍‌ସନ୍‌ପ୍ରାପ୍ତ ରାଜକର୍ମଚାରୀ ବହୁବର୍ଷ ପୂର୍ବରୁ ବୃକର ଛୁଡ଼ି ଘରେ ବସି-ଅଛନ୍ତି । ସେ ଅଦ୍ୟାବଧି ସ୍ୱପ୍ନ ଦେଖନ୍ତି—କମିସନର କଲେକ୍ଟର ଆସିଅଛନ୍ତି, ଅଫିସ ପରିଦର୍ଶନ ଲଗିଅଛି, ନଥି ଦେଖାହେଉଅଛି; ବହୁ କାଗଜପତ୍ର ଖୋଜିବାରେ ବ୍ୟସ୍ତ । ଏହିପରି ଉତ୍କଣ୍ଠାଯୋଗୁଁ ସେ ସ୍ୱପ୍ନ ରାଜ୍ୟରେ ଅଫିସ କାର୍ଯ୍ୟ କରନ୍ତି । ଏହା ଅଭ୍ୟାସଯୋଗର ପରିପକ୍ୱତାର ଫଳ । ପ୍ରତ୍ୟେକ ଯୋଗ ଅଭ୍ୟାସ ସାପେକ୍ଷ; ସୁତରାଂ ଅଭ୍ୟାସହିଁ ଯୋଗ ।

ଘାଟିପଥରେ ମେଘ ମାନବର କ୍ରୀଡ଼ା ଗୋଟାଏ ଅପୂର୍ବ ଦୃଶ୍ୟ । ଧୂମାକାରରେ ମେଘ ଧାଇଁଆସି ମୋଟର ଭିତରେ ପଶି ଖରଗତିରେ ବାହାରି ଚାଲିଯାଏ । ତାକୁ ଧରିବାକୁ ପ୍ରବଳ କୌତୁହଳ ଜାତ ହୁଏ; ମାତ୍ର ଧରିହୁଏ ନାହିଁ— ଧରୁଁ ଧରୁଁ ସେ ଦେହ ଆର୍ଦ୍ର କରିଦେଇ ପଳାଇଯାଏ । ଆକାଶର ମେଘ ସଙ୍ଗରେ ମର୍ତ୍ତ୍ୟମାନବର ଏ କୌତୁକ ଦେଖି ପରିହାସପ୍ରିୟ ପାର୍ବତ୍ୟ ବାୟୁ କର୍ କର୍ ସ୍ୱରରେ ହସିଉଠି ପରିହାସ କରେ । ସେ କୌତୁକ ଯେପରି ମଧୁର; ସେ ପରିହାସ ସେହିପରି ମଧୁମୟ, ଏଣେ ମେଘବାନ୍ଧବ ଚାତକ ମହ୍ଲାର ରାଗିଣୀରେ ତାହାର ମେଘମିତର ସ୍ୱାଗତଗୀତିକା ଗାନ କରୁଥାଏ । "ମିତ ମିତ" ବୋଲି ଆର୍ଦ୍ର ବ୍ୟାକୁଳ କଣ୍ଠରେ ମିନତିଭରା ଛନ୍ଦରେ ବନ୍ଧୁଏ ଉଷ୍ଣ ପ୍ରାର୍ଥନା କରୁଥାଏ; ମାତ୍ର ନିଷ୍ଠୁର ମିତ ମେଘ ସେଥିରେ କର୍ଣ୍ଣପାତ ନ କରି ପର୍ବତକୁ ଉଠିଯାଏ । ଦର୍ପୋଦ୍ଧତ କୃପଣ ଧନୀ ଦାନ ଯାଚକର କରୁଣ ପ୍ରାର୍ଥନା ଏହିପରି ବ୍ୟର୍ଥ କରେ ସିନା । ମେଘ ଗିରିରାଜର ବେଶକାରି, ସେ କେତେବେଳେ ତାକୁ ଚନ୍ଦନଚର୍ଚ୍ଚିତ କରୁଅଛି, କେବେ ମୟୂରକଣ୍ଠୀ ପରିଚ୍ଛଦ ପିନ୍ଧାଇ ତାକୁ ରାଜବେଶରେ ସଜାଇଦେଉଅଛି, ପୁଣି କେତେବେଳେ ବା ତାହା ମସ୍ତକରେ ହୀରକମୁକୁଟ ପିନ୍ଧାଇଦେଉଅଛି । ତାହାର ଛାୟା ପ୍ରଚଣ୍ଡ ଦୈତ୍ୟ ପରି ଟିଲାକୁ ଗିଳିଦେଉଅଛି; କିନ୍ତୁ ରୌଦ୍ରର ରୁଦ୍ର ଜ୍ୱାଳା ସହିନପାରି ତାକୁ ଉଦ୍‌ଗାର କରିଦେଇ ଉପରେ ଲୁଚିଯାଉଅଛି । ଗିରିଗାତ୍ରରେ ମୁହୂର୍ତ୍ତକ ମଧ୍ୟରେ ଏହିପରି କେତେ ସୌନ୍ଦର୍ଯ୍ୟର ସୃଷ୍ଟି ହୋଇଯାଉଛି । ପୁଣି ପ୍ରତିମୁହୂର୍ତ୍ତରେ କେତେ ଧ୍ୱଂସପ୍ରାପ୍ତ ହେଉଅଛି । ବୈଚିତ୍ର୍ୟର ସୃଷ୍ଟି, ପ୍ରଳୟର ମହାଲୀଳା ଅନବରତ ଲାଗିରହିଛି । ଶୈଳ ଖଣ୍ଡିଏ ଦୃଶ୍ୟ ମହାକାବ୍ୟ । ତାହାର ପଟ୍ଟପରିବର୍ତ୍ତନ ସର୍ବଦା [illegible] ଘଟୁଅଛି, ତାହାସ୍ଥାନରେ ନୂତନ

ଦର୍ଗର ସଂଯୋଗ ହୋଇଅଛି, ସେଥିରେ କଳନା ନାହିଁ । ଏହି ପରିବର୍ତ୍ତନରେ କାବ୍ୟ ପୂର୍ଣ୍ଣ । ଏହି ମହାପରିବର୍ତ୍ତନର ଶେଷ କେଉଁଠାରେ, ତାହା କିଏ କହି ପାରିବ ? ଏହି ବୈଚିତ୍ର୍ୟ ହେତୁ ଗିରି ଏତେ ସୁନ୍ଦର । ବୈଚିତ୍ର୍ୟବିହୀନ ସୌନ୍ଦର୍ଯ୍ୟ ଅଳଙ୍କାର ଶୂନ୍ୟ ବାକ୍ୟ ପରି ବିଶେଷତ୍ୱ ବର୍ଜିତ । ବୈଚିତ୍ର୍ୟହିଁ ସୌନ୍ଦର୍ଯ୍ୟର ମୂଳ ଏବଂ ପ୍ରାଣ । ଯେଉଁ ବୈଚିତ୍ର୍ୟ ସର୍ବତ୍ୟାଗୀ ମୁନିଋଷିମାନଙ୍କର ଚିତ୍ତ ବଶ କରିଥିଲା ତାହାର ଶକ୍ତି, ଗମ୍ଭୀରତା ଏବଂ ମହତ୍ତ୍ୱ କେତେ, ତାହା ଭାବିଲେ ଚିତ୍ତ ବିସ୍ମୟରେ ସ୍ତବ୍ଧ ହୋଇଯାଏ । କିନ୍ତୁ ସ୍ଥଳକୂଳ ମିଳେ ନାହିଁ । ଏହି ବୈଚିତ୍ର୍ୟ ହେତୁ ଘାଟି ହରିତ । ସବୁ ଅବସ୍ଥାରେ ସବୁଶ୍ରେଣୀର ଲୋକ ପ୍ରାଣରେ ସେ ଅସୀମ ଆନନ୍ଦ ଦାନ କରେ ।

ଘାଟିର ଧାରରେ ସ୍ଥାନେ ସ୍ଥାନେ ବନ୍ୟଜାତିର ଗ୍ରାମ ଅବସ୍ଥିତ । ଆବାଳବୃଦ୍ଧ ଗ୍ରାମବାସୀ ଘାଟିରେ କୁଲିକାମ କରନ୍ତି । ଶରୀର ଦୃଢ଼, ସବଳ ଏବଂ ସୁଗଠିତ, ବର୍ଣ୍ଣ କୃଷ୍ଣ, ଆକୃତି ଖର୍ବ । ଅଖଣ୍ଡ ସ୍ୱାସ୍ଥ୍ୟର ଆଭାସ ତାଙ୍କ ସବଳତା ହୃଷ୍ଟପୁଷ୍ଟ ଶରୀରରୁ ବେଶ ବୁଝାଯାଏ । ସେମାନେ ବନଗିରିର ଜ୍ଞାତି ପରିବାର । ବନଗିରି ତାଙ୍କର ରକ୍ଷକ, ପାଳକ ଏବଂ ଶିକ୍ଷକ । ନିରାଡମ୍ବର ସରଳ ଜୀବନ ଯାପନ ସେମାନଙ୍କର ଚିର ଅଭ୍ୟାସ । ସେମାନେ ଧର୍ମର ସୂକ୍ଷ୍ମ ସୂକ୍ଷ୍ମତର ଅର୍ଥ ବୁଝନ୍ତି ନାହିଁ— ଯାହା ସେମାନଙ୍କର ବିଶ୍ୱାସ, ତାହାହିଁ ଧର୍ମ । ନବଯୁଗ ସଭ୍ୟତାର ଶଙ୍ଖଧ୍ୱନି ସେ ଜାତିର କାନରେ ବାଜିନାହିଁ । ସ୍ୱଭାବ ବଡ ତୁଷ୍ଟ, ଏକବୁଝା । ଏ ଜାତି ମଧ୍ୟରେ ଶିକ୍ଷାର ଆଲୋକପାତ ବାଞ୍ଛନୀୟ । ପୁରୁଷମାନେ ଲେଙ୍ଗୋଟି ମାରନ୍ତି, ସ୍ତ୍ରୀମାନଙ୍କର ଆବରଣ ଅଛି । ଚୋରି, ଜୁଆଚୋରି, ମିଥ୍ୟା, ପ୍ରବଞ୍ଚନା ସେମାନଙ୍କର ଘୃଣ୍ୟ, ଚକ୍ଷୁଶୂଳ । ସେମାନେ ବ୍ୟଭିଚାରର ପ୍ରତି ସତତ ଖଡ୍ଗହସ୍ତ । ଅସଭ୍ୟ ଅଶିକ୍ଷିତ ହେଲେହେଁ ସତ୍ୟପ୍ରିୟ ଜାତି । ସେମାନଙ୍କର ଏକତା ଜାତୀୟତା ସଭ୍ୟ ଶିକ୍ଷିତନାମଧାରୀ ଅନେକ ଜାତିର ଶିକ୍ଷଣୀୟ । ସେ ଜାତିର ସ୍ତ୍ରୀ-ସ୍ୱାଧୀନତା ଅଛି; ମାତ୍ର ତାହା ଦୂଷିତ ବା ବିକୃତ ନୁହେଁ । ସୀମାବଦ୍ଧ ଦୋଷ ଦେଖିଲେ ଅଗ୍ନିଶର୍ମା । କ୍ଷମାର ମୂଲ୍ୟ ଏମାନଙ୍କଠାରେ କଣ୍ଟାକର ନୁହେଁ । କ୍ଷମା ସ୍ୱର୍ଗୀୟ, ଦଣ୍ଡ ପୈଶାଚିକ, ଏହା ବୁଝିବାର ଶକ୍ତି ସେମାନଙ୍କର ନାହିଁ । ସେମାନେ ସାହସୀ, କର୍ମଠ । ସ୍ଫୂର୍ତ୍ତି ଏବଂ ଉତ୍ସାହର ଜୀବନ୍ତ ମୂର୍ତ୍ତି ସେମାନଙ୍କ ମୁଖମଣ୍ଡଳରେ ଉଜ୍ଜ୍ୱଳ ରୂପେ ମୁଦ୍ରିତ; ମାତ୍ର ଟିକ୍ୱ ରମ୍ଭା ଜଳୁବଣେତକୁ ପିଠା

ଲାଗିଲା ପରି କମ୍ବା ଅନେକ ପକ୍ଷବିଶାରଦ ପକ୍ଷୀବିଜ୍ଞାନୀ ରକ୍ଷଣଶୀଳଙ୍କୁ ଅମିତ୍ରଛନ୍ଦ ପିତା ଲାଗିଲା ପରି ଟିକା ଏମାନଙ୍କୁ କୋଡଲ ଭଳି ପିତା ଲାଗେ । ଏମାନଙ୍କ ମଧ୍ୟରେ ନୃତ୍ୟ-ଗୀତ, ଆମୋଦ ପ୍ରମୋଦ ପ୍ରଚଳିତ ଅଛି; ମାତ୍ର ତାହା ସୀମାବଦ୍ଧ ଏବଂ ସାମ-ୟିକ । ଏମାନଙ୍କର ସମାଜବନ୍ଧନ ଦୃଢ଼ ଏବଂ ନିୟନ୍ତ୍ରିତ ।

ବନ୍ୟ ଜାତିମାନେ ଦେବତା ମାନନ୍ତି । ଯାହାଠାରୁ ଉପକାର ପାଆନ୍ତି ସେହି ତାଙ୍କର ଦେବତା । ବନ, ପର୍ବତ, ଶସ୍ୟକ୍ଷେତ୍ରଠାରୁ ଉପକାର ପାଆନ୍ତି ବୋଲି ଦେବତା ବିଶ୍ୱାସରେ ସେମାନଙ୍କୁ ପୂଜାକରନ୍ତି । ଯେ ଦିଏ ସେ ଦିଅଁ ଅର୍ଥାତ୍ ଦେବତା । ବାସ୍ତବରେ ଯେ ମଙ୍ଗଳ ଦାନକରେ ସେ ଦେବତା । ଅସଭ୍ୟ ଆଦିମ ଅଧିବାସୀ ଜାତିର ଏହି ସରଳ ବିଶ୍ୱାସ ମୂଳରେ ପ୍ରକୃତ ଗଭୀର ସତ୍ୟ ନିହିତ ଅଛି । ଅଧିକନ୍ତୁ ସିଦ୍ଧି ପାଇବା ପାଇଁ ଏହି ଦେବତାଙ୍କ ନିକଟରେ ଜୀବବଳି ମାନସିକ କରନ୍ତି । ଏହା ଅବଶ୍ୟ ନିନ୍ଦନୀୟ ନିଷ୍ଠୁର ଯୋଗଥିଆ, ମାତ୍ର ସଭ୍ୟ, ଶିକ୍ଷିତ ସମାଜରୁ ବଳିପ୍ରଥା ଅଦ୍ୟାବଧି ଉଠିଯାଇନାହିଁ. ଘୋର ଅସଭ୍ୟ ବନ୍ୟ ଜାତିକୁ ବା କିଏ କେଉଁ ମୁହଁରେ ବାରିବ । ହତ୍ୟା ସପକ୍ଷରେ ସଭ୍ୟ ସମାଜ ଶାସ୍ତ୍ରର ପ୍ରମାଣ ଦେଖାନ୍ତି, ଏହା ଶାସ୍ତ୍ର ପ୍ରତି ଅବମାନନା ସିନା । ବେଦରେ ଜୀବହତ୍ୟାର ବିଧି ଅଛି ବୋଲି ସତ୍ୟଧର୍ମର ପ୍ରବର୍ତ୍ତକ ମହାତ୍ମା ବୁଦ୍ଧଦେବ ବେଦକୁ ମାନୁନଥିଲେ । ହତ୍ୟା ହିଂସା ଯେବେ ବୈଧ ହୁଏ, ତେବେ ପାପ ମଧ୍ୟ ବୈଧ । ବୈଧ ହିଂସା ମଧୁର କେବଳା ପର କଥନ ଯୁକ୍ତ । ଜୀବ ବ୍ରହ୍ମ ହେଲେ, ତେବେ ଜୀବହତ୍ୟା ବ୍ରହ୍ମହତ୍ୟା ନୁହେଁ କି ? ଏହି ହେତୁରୁ କୌଣସି ଧର୍ମ ହତ୍ୟାକୁ ସମର୍ଥନ କରି ନାହିଁ । ପର ପ୍ରାଣ ବଧ ନିଜର ଶ୍ରେୟ ସାଧନ ବର୍ବର ପୈଶାଚିକ ବ୍ୟବହାର । ପ୍ରାଣୀ ହୋଇ ପ୍ରାଣୀକୁ ବଧ କରିବା ଆତ୍ମହତ୍ୟା ସଙ୍ଗେ ସମାନ; ଏହା ଶଠତା କମ୍ବା ଉଚ୍ଚାଭିଳାଷ ଉଚ୍ଚପ୍ରକୃତିର ନୁହେଁ ।

୨୩ ମାଇଲ ପରେ ପୋଟଙ୍ଗୀ ଗ୍ରାମ । ତାହା ଜୟପୁରସ୍ଥ ପୋଟଙ୍ଗୀ ତାଲୁକର କେନ୍ଦ୍ରସ୍ଥଳ । ଏ ଅଞ୍ଚଳରେ ଆଦିମ ଜାତିଙ୍କର ସଂଖ୍ୟା ଅଧିକ । ଏଠାରେ ଫରେଷ୍ଟ ଅଫିସ, ପୋଲିସ ଅଫିସ, ପୋଷ୍ଟ ଓ ଟେଲିଗ୍ରାଫ ଅଫିସ ପ୍ରଭୃତି କେତେକ ଅଫିସ ଅଛି । ଏଠାରେ ବିସ୍ତୃତ ଆମ୍ବ ବଗିଚା ଅନେକ ଦେଖାଯାଏ । ଗ୍ରାମଟି ମେଲେରିଆର ଉତ୍ପତ୍ତି ଭୂମି । ସେଠାରୁ କୋରାପୁଟ ୩୪ ମାଇଲ । ଏହା ଗୋଟିଏ କ୍ଷୁଦ୍ର ସହର । ଉପଯୁକ୍ତ ଅଫିସ ଅଦାଲତ ଏଠାରେ

ଅଛି । ସେଠାରୁ ଜୟପୁର ବାର ମାଇଲ । ଏହି ପଥ "ଦେଉଘାଟି" ଉପରେ ଯିବାକୁ ହୁଏ । ଘାଟି ତିନି ଭାଗରେ ବିଭକ୍ତ—ସାଲୁର ଘାଟି, ଶୁଙ୍କି ଘାଟି ଏବଂ [illegible] ଘାଟି । ଏହି ତିନି ଘାଟି ପାର ହେଲେ ଜୟପୁର ।

---

1. ପଞ୍ଚଦଶ ଶତାବ୍ଦୀବେଳକୁ ଜୟପୁର ରାଜ୍ୟ ଉତ୍ତରରେ କଳାହାଣ୍ଡିର ବୁଢାଲିଗଡ଼ଠାରୁ ଦକ୍ଷିଣରେ କାମ୍ବାମେଟ୍ଟୁ ପଶ୍ଚିମରେ ଶବରୀ ନଦୀଠାରୁ ପୂର୍ବରେ ସମତଳ ଅଞ୍ଚଳଯାଏ ବିସ୍ତୃତ ଥିଲା । 1775 ମସିହା ବେଳକୁ ଏ ଅଞ୍ଚଳ ବ୍ରିଟିଶ ଶାସନାଧୀନକୁ ଆସିଥିଲେହେଁ ଜୟପୁର ରାଜାହିଁ ଏ ଅଞ୍ଚଳରେ ପ୍ରତ୍ୟକ୍ଷ ଶାସନ ଚଳାଉଥିଲେ । 1863 ମସିହାରେ ବ୍ରିଟିଶ ସରକାର ଜୟପୁରଠାରେ ଜଣେ ସହକାରୀ ଏଜେଣ୍ଟଙ୍କୁ ଅବସ୍ଥାପିତ କରିଥିଲେ । ସେ ବର୍ତ୍ତମାନର ମାଲକାନଗିରି, ନବରଙ୍ଗପୁର ଓ କୋରାପୁଟ (ନାରାୟଣପାଟଣା ଥାନା ବ୍ୟତୀତ) ସବ୍‌ଡିଭିଜନର ଦାୟିତ୍ୱରେ ଥିଲେ । ଅନ୍ୟ ଜଣେ ସହକାରୀ ଏଜେଣ୍ଟ ପାର୍ବତୀପୁରଠାରେ ରହି ନାରାୟଣପାଟଣା ଥାନା, ରାୟଗଡ଼ା ଓ ଗୁଣୁପୁର ସବ୍‌ଡିଭିଜନର ଶାସନ ଦାୟିତ୍ୱ ଚଳାଉଥିଲେ । କବିଶେଖର ଚିନ୍ତାମଣି "ଜୟପୁର" ଗ୍ରନ୍ଥ ଲେଖିଲାବେଳକୁ ଅବିଭକ୍ତ କୋରାପୁଟ ଅଞ୍ଚଳ 'ଜୟପୁର' ଇଷ୍ଟେଟ୍ ରୂପେ ପରିଚିତ ଥିଲା ।

2. ସାଲୁର ଜୟପୁର ଇଷ୍ଟେଟ୍‌ର ଅନ୍ତର୍ଭୁକ୍ତ ଥିଲା ଏବଂ ଏହାର ରାଜା ଓଡ଼ିଆ ଥିଲେ ।

3. ବର୍ତ୍ତମାନ ପୂର୍ବପରି ଘଞ୍ଚ ଜଙ୍ଗଲ ଆଉ ନାହିଁ । ଅତଏବ ବର୍ଣ୍ଣିତ ଦୃଶ୍ୟ ବିରଳପ୍ରାୟ ।

4. ଅଧୁନା ଏ ଦୃଶ୍ୟ ମଧ୍ୟ ଦୃଷ୍ଟିଗୋଚର ହୁଏନାହିଁ ।

5. 1863 ମସିହାରେ ଜୟପୁର ଇଷ୍ଟେଟ୍ ଇଂରେଜଙ୍କ ପ୍ରତ୍ୟକ୍ଷ ଶାସନକୁ ଆସିବାବେଳକୁ ଏହି ପାର୍ବତ୍ୟାଞ୍ଚଳରେ ବନ୍ୟରାସ୍ତା ବ୍ୟତୀତ ବସ୍ତୁତଃ ଯଥାର୍ଥ ଗମନାଗମନ ପାଇଁ ସୁବିଧା ନଥିଲା । ଜୟପୁରଠାରୁ ଗୋଦାବରୀ ଦେଇ ଭଦ୍ରାଞ୍ଚଳଯାଏଁ ଏବଂ ଗୁଣୁପୁରଠାରୁ ପାରଳାଖେମୁଣ୍ଡିଯାଏ ଯୋଗାଯୋଗ ସମ୍ଭବ ଥିଲା । ଜୟପୁରଠାରୁ ନନ୍ଦପୁର ଓ ଅନନ୍ତଗିରି ଦେଇ ବିଶାଖାପାଟଣା ପର୍ଯ୍ୟନ୍ତ ରାସ୍ତାତିଆରି କାମ ଆରମ୍ଭ ହୋଇଥିଲା । 1866 ମସିହାରେ ଜୟପୁରର ତତ୍କାଳୀନ ସହକାରୀ ଏଜେଣ୍ଟ ଲେଫ୍ଟନାଣ୍ଟ ସ୍ମିଥ୍ ସାଲୁର–ଜୟପୁର ରାସ୍ତାର ନିର୍ମାଣ ଆରମ୍ଭ କରିଥିଲେ । 1878 ମସିହାରେ ପୁଣି କୋରାପୁଟର ସ୍ୱତନ୍ତ୍ର ସହକାରୀ ଏଜେଣ୍ଟ ଏଇଚ୍. ଜି. ଟର୍ଣ୍ଣର ଶଗଡ଼ ରାସ୍ତାକୁ ଓସାରିଆ କରି ପ୍ରଥମଥର ପାଇଁ ପଟାଙ୍ଗୀଠାରୁ ଡାଡ଼ିବାରସାଯାଏଁ ରାସ୍ତା ନିର୍ମାଣ କଲେ । 3000 ଫୁଟ ଉଚ୍ଚରେ ଥିବା ଏହି ଘାଟିରାସ୍ତାର ଦୈର୍ଘ୍ୟ 20 ମାଇଲ । ଲେଫ୍ଟନାଣ୍ଟ ସ୍ମିଥ୍ ପୁଣି କୋରାପୁଟଠାରୁ ରଣାଗଡ଼ ଘାଟି, ବରିଗୁମା ଦେଇ ଜୟପୁରକୁ ରାସ୍ତା ନିର୍ମାଣ କରିଥିଲେ । 1874 ମସିହାରେ ସାଲୁରଠାରୁ ଘାଟି ଅତିକ୍ରମ କରି ପ୍ରଥମଥର ପାଇଁ ଜୟପୁର

ଯାଏଁ ଶଗଡ଼ ଯିବାଆସିବା କରିପାରିଲା । 1857 ମସିହାରେ କୋରାପୁଟ–ଜୟପୁର ଘାଟିରାସ୍ତା ନିର୍ମିତହେଲା । ମହାରାଣୀ ଭିକ୍ଟୋରିଆଙ୍କ ଜୁବୁଲି ଉତ୍ସବ ଉପଲକ୍ଷେ ଏହା ଉନ୍ମୋଚିତ ହୋଇ-ଥିବାରୁ ଏହାକୁ 'ଜୁବୁଲି ଘାଟି' କୁହାଯାଏ ।

୬. ଏବେ ମଧ୍ୟ ଏ ଅଞ୍ଚଳ ଦୁର୍ଗମପ୍ରାୟ । ଏ ଅଞ୍ଚଳରେ ଶିକ୍ଷା ପ୍ରସାର ପାଇଁ ପ୍ରଣୀତ ଯୋଜନା-ମାନ ସଫଳରୂପନେଇ ପାରିନାହିଁ । ଆଦିବାସୀ ଅଧ୍ୟୁଷିତ ଏ ଭୂମିରେ ଶିକ୍ଷା ପ୍ରସାର ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ଆବଶ୍ୟକ ଯାହା ପାରିପାର୍ଶ୍ୱିକ ପରିସ୍ଥିତିକୁ ନେଇ ଜୀବିକା ଉପାର୍ଜନରେ ଲୋକଙ୍କୁ ଦକ୍ଷତା ଯୋଗାଇ ପାରିବ । ଅଧିବାସୀଙ୍କର ଅର୍ଥନୈତିକ ଅବସ୍ଥା, ସାଂସ୍କୃତିକ ଓ ସାମାଜିକ ବ୍ୟବସ୍ଥା, ଜୀବନଧାରଣର ଶୈଳୀ ଓ ମାନକୁ ଦୃଷ୍ଟିରେ ରଖି ପରିବର୍ତ୍ତିତ ପରିସ୍ଥିତିରେ ଜୀବିକା ଉପଯୋଗୀ ଧନ୍ଦାଭିତ୍ତିକ ଶିକ୍ଷାବ୍ୟବସ୍ଥା କରାଯାଇପାରେ । ଜୀବନ ଓ ଜୀବିକା ସହିତ ସମ୍ପର୍କିତ ନହେଲାଯାଏଁ ଶିକ୍ଷା ଯେ ଏକ ମୌଳିକ ଆବଶ୍ୟକତା, ଏକଥା ଲୋକେ ବୁଝି ପାରିବେନି । ଅତଏବ ଏ ଅଞ୍ଚଳର ଜନସମାଜର ଜୀବନ ଓ ଜୀବିକାକୁ ଭିତ୍ତି କରି ପ୍ରାଥମିକ ସ୍ତରଠାରୁ ସ୍ନାତକୋତ୍ତର ପର୍ଯ୍ୟନ୍ତ ସ୍ୱତନ୍ତ୍ର ଆବାସିକ ଶିକ୍ଷାବ୍ୟବସ୍ଥା ଆବଶ୍ୟକ ମନେହୁଏ ।



## ଦ୍ୱିତୀୟ ପରିଚ୍ଛେଦ

ଜୟପୁର ଦୁର୍ଗ ପର୍ବତ ମେଖଳା ମଧ୍ୟରେ ଅବସ୍ଥିତ । ତାହାର ଦକ୍ଷିଣ ପଟରେ ଅତର୍ସମାନ ନଭସ୍ପୃଶୀ ଗିରିମାଳା, ପଶ୍ଚିମରେ ଦୁଇମାଇଲବ୍ୟାପୀ ଜଗନ୍ନାଥସାଗର ନାମକ ବିସ୍ତୃତ ଦୀର୍ଘିକା ସେହି ମେଖଳାର ସୁନ୍ଦର ସ୍ମାରକ ମୁଦ୍ରାଙ୍କ ରୂପେ ବିରାଜିତ । ତାହା ଜୟପୁର ରାଜଲକ୍ଷ୍ମୀଙ୍କର ବିଶାଳ ଲୀଳାଦର୍ପଣ କିମ୍ବା ନିଭୃତ କେଳିସରୋବର । ଜଗନ୍ନାଥ ସାଗର ପଦ୍ମଫୁଲରେ ପରିପୂର୍ଣ୍ଣ ହୋଇ ତାରକାଗୁମ୍ଫିତ ନୈଶ ଆକାଶରୁ ଖଣ୍ଡେ ଖସିପଡ଼ିଲା ପରି ଦେଖାଯାଏ । ଫୁଲକୁଳେଶ୍ୱରୀ ସରୋଜ ଜେମା ପଦ୍ମିନୀ ସୁନ୍ଦରୀ ନିଜର ଅତୁଳ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ହସୁଅଛି । ବୋଧହୁଏ ବିଧି ଅମୃତରେ ଅହ୍ଲାଦ ମିଶାଇ ଏହି ଲାବଣ୍ୟନିଧି ସର୍ଜନା କରିଅଛି । ପୁଣି ସେହି ରୂପକୁ ବାସନ୍ତୀ ଜ୍ୟୋତ୍ସ୍ନାରେ ରସାଣି ଜ୍ୟୋତିର୍ମୟ ଏବଂ ନିର୍ମଳ୍ୟ କରିଅଛି ଅଥବା ନିଖିଳ ସୌନ୍ଦର୍ଯ୍ୟରୁ ସାର ସଙ୍ଗ୍ରହ କରି ତହିଁରେ ପୁଷ୍ପ ନିର୍ମିତ ଦେବଙ୍କ ଉଷାରାଗରେ ରଞ୍ଜିତ କରିଅଛି । ବିଧାତା ତାକୁ କରରେ ନିର୍ମାଣ କରିନାହିଁ, କଳ୍ପନାରେ ନିର୍ମାଣ କରିଅଛି । ସେ ସୁନ୍ଦର ତନୁ ରସରେ ଢଳଢଳ । ତାହାର ନିଃଶ୍ୱାସ ପୂତ ଓ ପରିମଳ । କୂଳରେ ବସି ସେହି ପରିମଳ ସେବନ କଲେ ଶୋକତପ୍ତ ହୃଦୟ ମଧ୍ୟ ଶାନ୍ତ ସୁଶୀତଳ ହୁଏ । ରାଜାଙ୍କର ପୋଷା ହାତୀମାନେ ବେଳେବେଳେ ଦୀର୍ଘିକାରେ ଜଳକେଳି ରଚନା କରନ୍ତି ଏବଂ ପଦ୍ମବନ ଧ୍ୱଂସକରି ଗଜମୂର୍ଖ ଆଖ୍ୟାର ସାର୍ଥକତା ପ୍ରମାଣ କରନ୍ତି । ସେମାନେ ଶୋଭାର ଯମ, ସୁରୁଚିର ଶତ୍ରୁ । ଗ୍ରୀଷ୍ମ ପରି ସରୋବରର ଶୀତଳ ସଳିଳରେ ଦାହ, ତୃଷ୍ଣା ଶାନ୍ତକରି ତାହାର ପଦ୍ମ ଅପ-ହରଣ କରନ୍ତି ଏବଂ ତାହାର ଶୋଭା ଉଦରସ୍ଥ କରନ୍ତି । ଜଳାଧାର ସୁନ୍ଦର; କିନ୍ତୁ ତାହାର ସ୍ୱଭାବ ସୁନ୍ଦର ନୁହେଁ । ନବାଗନ୍ତୁକ ଲୋକ ସେଥିରେ ଥରେମାତ୍ର ସ୍ନାନକଲେ କିମ୍ବା ତାହାର ଜଳ ପାନକଲେ ମାଳଜ୍ୱରକୁ ସାଦର ନିମନ୍ତ୍ରଣ କଲା ପରି ହୁଏ । ସାଗର କ୍ରମଶଃ ପୋତିହୋଇ ପଡ଼ୁଅଛି । ପଦ୍ମବନ ଯୋଗୁଁ ତାହାର ଏ ଦୁର୍ଗତି । ଶୋଭା ତାହାର ପ୍ରାଣର ବୈରୀ ହୋଇଅଛି । ସାଗରରେ ପ୍ରକାଣ୍ଡ ପ୍ରକାଣ୍ଡ ମତ୍ସ୍ୟ ଏବଂ କୁମ୍ଭୀର ପ୍ରଚୁର ଅଛନ୍ତି । ସାଗରର ଅନତି ଦୂରରେ ବସ୍ତି ଅନେକ ଉଦ୍ୟାନ, ସେଥିରେ ହାତୀ ଘୋଡ଼ା ରହନ୍ତି । ଏ ଅଞ୍ଚଳରେ ପ୍ରାକୃତିକ ସୌନ୍ଦର୍ଯ୍ୟ

ବାସ୍ତବରେ ଚମତ୍କାର । ସାଗରର ପଙ୍କୋଦ୍ଧାରର ଚେଷ୍ଟା ରାଜସରକାର ଦ୍ୱାରା ହେଉଅଛି । 'ଜଗନ୍ନାଥ ସାଗର ସାତ ମାଇଲବ୍ୟାପୀ କୃଷି ଭୂମିକୁ ଜଳ ଯୋଗାଏ । ଇଷ୍ଟ ଇଣ୍ଡିଆ କୋମ୍ପାନୀ ଅମଳରେ ବଡ଼ ବଡ଼ ସାହେବମାନେ ଏହି ସାଗରର ଭୂୟସୀ ପ୍ରଶଂସା କରିଅଛନ୍ତି ।

ଜୟପୁର ଗଡ଼ ଗୋଟିଏ ସୁନ୍ଦର ସୁସଜ୍ଜିତ ନାତିକ୍ଷୁଦ୍ର ନାତିବୃହତ୍ ସହର । ତାହାର କ୍ରମୋନ୍ନତି ଦୃଷ୍ଟିରେ ବୋଧହୁଏ ଅଦୂର ଭବିଷ୍ୟତରେ ତାହା ପ୍ରଥମଶ୍ରେଣୀର ସହରରେ ପରିଣତ ହେବ । ତାହାର ସୌଭାଗ୍ୟବିଧାତା ବର୍ତ୍ତ-ମାନ ରାଜା ସେ ବିଷୟରେ ବିଶେଷ ଚେଷ୍ଟିତ । ଦୁର୍ଗଟି "ନାକେଇ" ପର୍ବତର ଉପକଣ୍ଠରେ ଅବସ୍ଥିତ । ଗିରି ଏବଂ ଦୁର୍ଗ ଯୁକ୍ତାକ୍ଷରର ଉପମା ଧାରଣ କରି-ଅଛନ୍ତି ଅଥବା ଗିରୀନ୍ଦ୍ର କୋଳରେ ତାଙ୍କର ପ୍ରିୟତମା ନଜମା ପ୍ରେମବଦ୍ଧ ଦେବୀ ଉପବିଷ୍ଟା ନହୁବା ଶୌର୍ଯ୍ୟ କୋଳରେ କ୍ଷମା ଆସୀନା ।

ନାକେଇ ପର୍ବତର ଆଜିକା ନାମିକା ମତ । ତାହାର ଅପର ନାମ ନାକଟି । ପ୍ରବାଦ ଅଛି—ପୂର୍ବେ ଜେଲ ବା ଜୋରିମାନା ଦଣ୍ଡ ନ ଥିଲା । ତାହାର ପରି-ବର୍ତ୍ତରେ ଅପରାଧୀମାନଙ୍କର ନାକ, କାନ ବା ଅଙ୍ଗୁଳି କଟା ଯାଉଥିଲା । ଯେଉଁ-ମାନେ ନାକକଟା ଦଣ୍ଡାଦେଶ ପାଉଥିଲେ, ସେମାନଙ୍କୁ ଏହି ପର୍ବତ ଉପରକୁ ନେଇ ସୂର୍ପଣଖା କରାଯାଉଥିଲା । ଏହି ହେତୁରୁ ପର୍ବତର ନାମ "ନାକଟି" ହୋଇଅଛି । କେଉଁ ସୁଦୂର ଅତୀତ ବର୍ବର ଯୁଗରେ ଏ ଭଳି ପୈଶାଚିକ ରାଜ-ଦଣ୍ଡର ବିଧାନ ଥିଲା, ଜନଶ୍ରୁତିର ତାହା ଅଜ୍ଞାତ । ଏହି ପର୍ବତରେ ଚନ୍ଦନ ବୃକ୍ଷ ଅଛି । ଜୟପୁରର ଆହୁରି ଅନେକ ସ୍ଥାନରେ ମଧ୍ୟ ଚନ୍ଦନବନ ଅଛି । ଷ୍ଟେଟ ଦେୱାନ ସାହେବଙ୍କ ଆବାସଭବନ ନିକଟରେ ରୋପିତ ଚନ୍ଦନ ତରୁ ଦେଖାଯାଏ । ଚନ୍ଦନର ଡାଳ, ପତ୍ର, ଫୁଲ ବା ବଲ୍କଳ ବାସେ ନାହିଁ, କେବଳ ଗଛର ମଞ୍ଜ ବାସେ । ଏହି ଗଛ ସଙ୍ଗରେ ଶିଶୁଷ ଗଛର ସୌସାଦୃଶ୍ୟ ଅନେକ ପରିମାଣରେ ଅଛି । ଚନ୍ଦନବୃକ୍ଷର ମଞ୍ଜିକୁ ନିମ୍ବ, ବଇଞ୍ଚ, ପିଦୁଡ଼ ପ୍ରଭୃତି କାଠ ସଙ୍ଗରେ ସିଝାଇଲେ ତାହା ଚନ୍ଦନର ସ୍ୱଭାବ ପ୍ରାପ୍ତ ହୁଏ । ବଜାରରେ ଯେଉଁ ଚନ୍ଦନକାଠ ବିକ୍ରି ହୁଏ, ସେଥିରୁ ଅଧିକାଂଶ ଏହି କୃତ୍ରିମ ଚନ୍ଦନ । ବିଶୁଦ୍ଧ ଚନ୍ଦନର ମୂଲ୍ୟ ଅଧିକ । ଜୟପୁରରେ ଚନ୍ଦନ ଗଛର ସଂଖ୍ୟା କ୍ରମଶଃ ବଢ଼ୁଅଛି । ସମୟରେ ଏହି ଚନ୍ଦନକାଠ ବହୁ ଲାଭଜନକ ବିସ୍ତୃତ ବ୍ୟବସାୟରେ ପରିଣତ ହେବ । ଜୟପୁରରେ ଏହିପରି ପ୍ରଚୁର ବନ୍ୟବିଭବ ଅଛି । ଜୟପୁରକୁ ରେଲ ସୁବିଧା ନ ହେବା ପର୍ଯ୍ୟନ୍ତ ବନ୍ୟ ବାଣିଜ୍ୟର ଉନ୍ନତି ସୁଦୂର

ଦେଖନ୍ତ । ରେଳପଥର ବ୍ୟବସ୍ଥା ହୋଇଥିଲା, ମାତ୍ର ପୃଥିବୀବ୍ୟାପୀ ଅର୍ଥସଙ୍କଟ ଏଠାରେ ଉପସ୍ଥିତ ହେବାରୁ ସେ ପ୍ରସ୍ତାବ ସ୍ଥଗିତ ରଖାଯାଇଅଛି ।

ରାତରେ ଏଇ ନାରିକେଳ ପର୍ବତରେ ଦାବାନଳ ଜଳଉଠି ବିବିଧ ଅପୂର୍ବ ଦୃଶ୍ୟର ମନୋହର ସୃଷ୍ଟି କରେ । କେବେ ଦାବାନଳରେଖା ମୁକ୍ତାମାଳର ଜ୍ୟୋତିର୍ମୟ ପଥ ପ୍ରସ୍ତୁତ ଦେଖାଯାଏ, କେବେ ବା ପର୍ବତ କଣ୍ଠର ସ୍ୱର୍ଣ୍ଣ ସୂତ୍ରହାର ପ୍ରାପ୍ତ ହସେ, କେବେ ଅବା ପର୍ବତ ଗାତରେ ନାନା ଭଙ୍ଗୀରେ ତର ଚୁକ୍ତି ବର୍ଣ୍ଣମାଳା ଅଙ୍କନ କରେ । ସାହିତ୍ୟ ବିଭବରେ କୁବେର ସମ ଏହି ପର୍ବତ ସାହିତ୍ୟ ସମ୍ରାଟଙ୍କର ଜଣେ ସାହିତ୍ୟିକ ପ୍ରଜା; ସୁତରାଂ ତାଙ୍କର ସମ୍ବର୍ଦ୍ଧନା ଶ୍ଳୋକ ସ୍ୱର୍ଣ୍ଣାକ୍ଷରରେ ଲେଖି ଦେଖାଉଅଛି ଅଥବା ବିଧାତା ନିଜେ ମହାମାନବର କପାଳଫଳକରେ ଯାହାର ପ୍ରତିଭାର ଜ୍ୟୋତି ଫୁଟିଉଠିଅଛି । କଣ୍ଟାମାଳ, ଜୁଙ୍ଗଝୁଣ୍ଟି କୁଟାପର୍ବତ, ପେଠାଗୁଡ଼ାର ପ୍ରଭୃତି ଉତ୍ତର, ପୂର୍ବ ଓ ଦକ୍ଷିଣଦେଶରେ ପର୍ବତମାନ ନାରିକେଳର ଅଧିବାସୀ ହୋଇଥାଆନ୍ତି । ତାଙ୍କ ଦେହରେ ହିଁ ଦାବା-ନଳ ଜଳଉଠେ । ସତେ ଯେପରି ପର୍ବତମାନେ ଏକ ସଙ୍ଗରେ ଜୟପୁର ରାଜ-ଲକ୍ଷ୍ମୀଙ୍କୁ ଭକ୍ତିରେ ଆଳତି କରୁଅଛନ୍ତି କିମ୍ବା ରାତିର ଅନ୍ଧାର ସମୁଦ୍ର ବକ୍ଷରେ ବଡ଼ବାନଳ ଜଳଉଠିଅଛି ଅଥବା ଅନ୍ଧାର ତମସାଚ୍ଛନ୍ନ ହୃଦୟରେ ସଦୁପଦେଶ ଜ୍ଞାନାଲୋକର ରେଖାପାତ କରିଅଛି । ପର୍ବତ ପର୍ବତନ୍ତ୍ରରେ ଅନେକ ରୂପେ ରହି ସମୁଦ୍ର ମଧ୍ୟରେ ସେତୁବନ୍ଧ ପରି ବିସ୍ତୃତ । ଏହି ଗିରିମାଳା ରାଜ୍ୟର ଶ୍ରୀ, ସମ୍ପଦ ଏବଂ ଶକ୍ତି । ପର୍ବତମାନ ସ୍ଥାନେ ସ୍ଥାନେ ନିବିଡ଼ ଅରଣ୍ୟମୟ । ସ୍ଥାନେ ସ୍ଥାନେ ଗର୍ଭସ୍ତରେ ମଣିପଦରେ ହୀରାପଲ ରହି ପାରନ୍ତି । ଜୟପୁରସ୍ଥ ନବରଙ୍ଗପୁର ବଣରେ ହାତୀ ଅଛନ୍ତି, ସେଠାରେ ହାତୀଧରା ହୁଏ । କଥାରେ କହନ୍ତି—"ହାତୀ ଜୀଇଁଥିଲେ ଲକ୍ଷେ ଟଙ୍କା, ମଲେ ବି ଲକ୍ଷେ ଟଙ୍କା," ସୁତରାଂ କେନ୍ଦୁଝର ରାଜ୍ୟର ପାଳିତ ସମ୍ପଦ ।

ରାଜପ୍ରାସାଦ ନିକଟରୁ ବିପଣୀମାଳା ବାହାରି ଶାଖା ପ୍ରଶାଖା ବିସ୍ତାର କରିଅଛି । ନାନାବିଧ ପଣ୍ୟ ଦ୍ରବ୍ୟରେ ବିପଣୀ ଉଜ୍ଜ୍ୱଳ । ବହୁ ଦୋକାନଗୁଡ଼ିକ ଟଙ୍ଗାହୋଇଥିବା ନାନାବର୍ଣ୍ଣର ବସ୍ତ୍ରରେ ଇନ୍ଦ୍ରଧନୁର ହାରି ସିନ୍ଧିଳ ପାଏ ଦେଖାଯାଏ । ଏ ଅଞ୍ଚଳର ପିତ୍ତଳ ବାସନ ଅତି ସୁନ୍ଦର । କେତେ ଗଦାଗୁଡ଼ିକ ସ୍ୱର୍ଣ୍ଣ ବର୍ଣ୍ଣ ପରି ଉଜ୍ଜ୍ୱଳ ଏବଂ ଚକ୍‌ଚକ । ପଥର ଦୁଇପାର୍ଶ୍ୱରେ ହର୍ମ୍ୟମାଳା ନଗର ଦୁଇପାର୍ଶ୍ୱରେ ବନ୍ଧ ପ୍ରାପ୍ତ ବିସ୍ତୃତ । ଜନ ଶ୍ରେଣୀର ଗତାଗତ ଅବିରଳ

ଲାଗିଥାଏ — ସତେ ଯେପରି କବିବର୍ଣ୍ଣିତ କୃଷ୍ଣ ପ୍ରେମ ଲୀଳା ସେହି ଛନ୍ଦରେ କବିତା ଲେଖିଯାଉଅଛି । ନାନାଜାତିର ବଣିକମାନେ ବଜାରମାନରେ ବାଣିଜ୍ୟ କରନ୍ତି । ତେଲଙ୍ଗା, ମୁସଲମାନ, ଶିଖ୍, ହିନ୍ଦୁସ୍ଥାନୀ ପ୍ରଭୃତି ନାନାଜାତିର ଲୋକେ ଚାକରୀ ଏବଂ ବ୍ୟବସାୟସୂତ୍ରରେ ଏଠାରେ ଅବସ୍ଥାନ କରନ୍ତି । ସ୍ଥାନୀୟ ସାଧାରଣ ଭାଷା ଓଡ଼ିଆ । ଅନ୍ୟଭାଷାର ପ୍ରଭାବ ସେଥିରେ ଖୁବ୍ ଅଳ୍ପ । କେତେକ ବାଦ ଦେଲେ ଅବଶିଷ୍ଟ ଖାଣ୍ଟି ଓଡ଼ିଆ । ରାଜବଂଶ ଓଡ଼ିଆ, ସେମାନେ ସୂର୍ଯ୍ୟବଂଶୀୟ । ଓଡ଼ିଶାର ଗଜପତି ରାଜବଂଶ ସଙ୍ଗରେ ଜୟପୁର ରାଜବଂଶର ବନ୍ଧୁତାତ୍ମକ ଅଛି ।

ରାଜଦୁର୍ଗ ଦୁଇ ଭାଗରେ ବିଭକ୍ତ । ପୁରୁଣାଗଡ଼ ଏବଂ ନୂଆଗଡ଼[2] । ମହାରାଜ ବିକ୍ରମଦେବ ପୁରୁଣା ଗଡ଼ରେ ଅବସ୍ଥାନ କରନ୍ତି । ନଅର ମଧ୍ୟରେ ରାଜବଂଶର ଇଷ୍ଟଦେବୀ କନକ ଦୁର୍ଗାଙ୍କର ମନ୍ଦିର ଅଛି । ସେଥିରେ ହିରଣ୍ମୟୀ ଦୁର୍ଗା ମୂର୍ତ୍ତି ବିରାଜିତା । କି ସୁନ୍ଦର ମାତୃମୂର୍ତ୍ତି, ପ୍ରସନ୍ନ ବଦନମଣ୍ଡଳରୁ ମାତୃତ୍ୱର ମହିମା ଝରି ପଡ଼ୁଅଛି । ଦେବୀଙ୍କ ଦକ୍ଷିଣ ପାର୍ଶ୍ୱରେ ସାନ କନକଦୁର୍ଗା ଅବସ୍ଥିତ । ସମ୍ମୁଖରେ ବୃହତ୍ ପିତ୍ତଳ ସିଂହ ଆଜ୍ଞା ପ୍ରତୀକ୍ଷାରେ ଉଭା ହୋଇଅଛି । ଦୁଇ ପାଖରେ ସ୍ୱର୍ଣ୍ଣନିର୍ମିତ ବିଜୟ ମୂର୍ତ୍ତି । ମୂଳ ମୂର୍ତ୍ତିଦ୍ୱୟ ପଦାକୁ ବାହାରନ୍ତି ନାହିଁ, ଏହି ବିଜୟପ୍ରତିମା ଯାତ୍ରା ପର୍ବରେ ତାଙ୍କର ପ୍ରତିନିଧିରୂପେ ବାହାରନ୍ତି । କଥିତ ହୁଏ — 'ଉତ୍କଳ ସମ୍ରାଟ ପ୍ରତାପୀ ପୁରୁଷୋତ୍ତମ ଦେବ କାଞ୍ଚି ଜୟକରି ଏହି କନକଦୁର୍ଗା ମୂର୍ତ୍ତିକୁ ପୁରୀକୁ ନେଇ ଯାଉଥିଲେ । ସେ ଜୟପୁର ରାଜ୍ୟଦେଇ ଯିବାବେଳେ ଜୟପୁରର ତତ୍କାଳୀନ ରାଜା ଏହି ମୂର୍ତ୍ତି ଛଡ଼ାଇ ଆଣିଥିଲେ ।' ଏ ଜନଶ୍ରୁତି ନିତାନ୍ତ ଅସମ୍ଭବ ବୋଧହୁଏ । ବିଶାଳ ଉତ୍କଳର ରାଜଚକ୍ରବର୍ତ୍ତୀ କାଞ୍ଚି ବିଜେତା ପୁରୁଷୋତ୍ତମ ଦେବଙ୍କଠାରୁ ମୂର୍ତ୍ତି ଛଡ଼ାଇ ନେବା ଭଳି ଦୁଃସାହସ ଜୟପୁରର ରାଜା କଦାପି କରି ନ ଥିବେ । ମହାରାଜ ବିକ୍ରମଦେବ ମଧ୍ୟ ଏ କଥା ବିଶ୍ୱାସ କରନ୍ତି ନାହିଁ । ସେ କହନ୍ତି — 'ପୁରୁଷୋତ୍ତମ ଦେବ ସୈନ୍ୟସାମନ୍ତ ନେଇ ଆଗରୁ ବାହାରି ଯାଇଥିଲେ । ମୂର୍ତ୍ତିବାହକମାନେ ସମସ୍ତଙ୍କ ପଛରେ ଥିଲେ । ସୈନ୍ୟ ଏବଂ ଯାନବାହନର କୋଳାହଳ ଶୁଣି ଜୟପୁରର ଲୋକେ ଦେଖିବାକୁ ଧାଇଁଲେ । ଅତି ଅଳ୍ପସଂଖ୍ୟକ ପ୍ରତିମାବାହକ ସେମାନଙ୍କୁ ଦେଖି ଜୟପୁର ସେନା ଯୁଦ୍ଧ କରିବାକୁ ଆସୁଛନ୍ତି ଭାବି ଭୟରେ ପ୍ରତିମା ସେହିଠାରେ ରଖିଦେଇ ପଳାଇଲେ । ଜୟପୁରର ଲୋକେ ତହୁଁ କନକଦୁର୍ଗାଙ୍କୁ [illegible] ଆଣି ରାଜାଙ୍କୁ ଦେଲେ । ରାଜା ନଅର ମଧ୍ୟରେ ମନ୍ଦିର ନିର୍ମାଣ କରି ଦେବୀଙ୍କୁ

ଇଷ୍ଟଦେବୀ ରୂପେ ପ୍ରତିଷ୍ଠିତ କଲେ, ବାସ୍ତବରେ ମହାବଳାଙ୍କର ଏ ଉକ୍ତି ସମୀଚୀନ ଏବଂ ସମ୍ଭବ ।

କନକଦୁର୍ଗାଙ୍କ ଡାହାଣ ପାଟରେ ବୃନ୍ଦାବନରୁ ଆନୀତ ମଦନମୋହନ ଦେବଙ୍କ ମୂର୍ତ୍ତି ସ୍ୱତନ୍ତ୍ର ମନ୍ଦିରରେ ଅଧିଷ୍ଠିତ । ମଦନମୋହନଙ୍କ ରତ୍ନପାଟରେ ରାଧିକା, ରାଧାକାନ୍ତ, ଲଳିତା, ସୀତା, ରାମ, ଲକ୍ଷ୍ମଣ, ଲକ୍ଷ୍ମୀ, ନାରାୟଣ, ନୃସିଂହ, ମହାଲକ୍ଷ୍ମୀ, ଚୈତନ୍ୟ, ନିତ୍ୟାନନ୍ଦ, ଗରୁଡ, ଲହୁଣିଆ ଗୋପାଳ, ଚନ୍ଦ୍ରଶେଖର, ପାର୍ବତୀ, ସୂର୍ଯ୍ୟନାରାୟଣ, ସୂର୍ଯ୍ୟାବର୍ତ୍ତ ଶଙ୍ଖ ପ୍ରଭୃତି ଏବଂ ଶତାଧିକ ଶାଳଗ୍ରାମ ମୂର୍ତ୍ତି ଅବସ୍ଥିତ । ମଦନମୋହନ ଯେପରି ଦେବ, ଦେବୀ, ଭକ୍ତ, ସିଦ୍ଧ ସାଧକଗଣଙ୍କୁ ନେଇ ସଭା କରି ବସିଅଛନ୍ତି । ପିତ୍ତଳ ଗରୁଡମୂର୍ତ୍ତି ସମ୍ମୁଖରେ ଉଭା ହୋଇଅଛି ।

ନଅରର ସିଂହଦ୍ୱାରରେ ଦୁଇଟି ବୃହତ୍ ପିତ୍ତଳ ସିଂହ ଦ୍ୱାରରକ୍ଷୀ ସ୍ୱରୂପ ଉପବିଷ୍ଟ । ଧାତୁ ସିଂହର ଗ୍ରୀବାଭଙ୍ଗୀ, ଠାଣି ଅତି ଚମତ୍କାର । ସିଂହଦ୍ୱାର ସମ୍ମୁଖରେ ରଘୁନାଥ ମନ୍ଦିର । ରାଜା ଦ୍ୱିତୀୟ ବିକ୍ରମଦେବଙ୍କ ଧର୍ମପ୍ରାଣା ଜନନୀ ଲକ୍ଷ୍ମୀ ମାଟମା ଗୋସାଇଁ ଏହି ମନ୍ଦିର ପ୍ରସ୍ତୁତ କରାଇ କାଶୀରୁ ଶଙ୍ଖମର୍ମର ପ୍ରସ୍ତରନିର୍ମିତ ରାମ ଲକ୍ଷ୍ମଣ ସୀତାଙ୍କର ମୂର୍ତ୍ତି ଅଣାଇ ସ୍ଥାପନ କରିଥିଲେ ।

ଅନ୍ୟ ଏକ ମନ୍ଦିରରେ ରାଜବଂଶର ଇଷ୍ଟଦେବ ବଲ୍ଲଭନାରାୟଣ ପ୍ରତିଷ୍ଠିତ । ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ଚତୁର୍ଭୁଜ ମୂର୍ତ୍ତି ଅତ୍ୟନ୍ତ ମନୋରମ । ଦୃଷ୍ଟି ସ୍ନେହକୋମଳ ଏବଂ ମଧୁର । ସତେ ଯେପରି ସେ ଦୃଷ୍ଟିରୁ ସ୍ନେହ, ପ୍ରେମ, ଦୟାର ତ୍ରିବେଣୀଧାରା ନିଗିଡ଼ି ପଡୁଅଛି । ବଲ୍ଲଭନାରାୟଣ ରୌପ୍ୟ ମେଢ଼ରେ ସଜ୍ଜିତ ହୋଇଛନ୍ତି । ସତେ ଯେପରି ସାକ୍ଷାତ୍ ମୂର୍ତ୍ତି ଦେହରୁ ଶୁଭ୍ର ସ୍ୱଚ୍ଛ ଜ୍ୟୋତି ନିର୍ଗତ ହୋଇ ମନ୍ଦିରକୁ ଜ୍ୟୋତିର୍ମୟ କରୁଅଛି । ଦୁଇ ପାଖରେ ଲକ୍ଷ୍ମୀ, ସରସ୍ୱତୀ ଅବସ୍ଥିତ । ରାଧାକୃଷ୍ଣ ଏବଂ ଲଳିତା ତାଙ୍କର ପ୍ରତିନିଧି ଦୋଳ ଏବଂ ଚନ୍ଦନଯାତ୍ରା ସମୟରେ ବାହାରନ୍ତି । ବଲ୍ଲଭନାରାୟଣଙ୍କ ଦକ୍ଷିଣପାର୍ଶ୍ୱରେ ସୂର୍ଯ୍ୟନାରାୟଣ ମୂର୍ତ୍ତି । ନିକଟବର୍ତ୍ତୀ ଅନ୍ୟ ଏକ ମନ୍ଦିରରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଏବଂ ପତିତପାବନ ବିରାଜିତ । ବଲ୍ଲଭନାରାୟଣ ଏବଂ ଜଗନ୍ନାଥଙ୍କ ଆଗରେ ଗରୁଡ ଦୁଇ ଅଡକୁ ମୁହାଁ କରି କର ଯୋଡ଼ି ଉଭୟ ଦେବତାଙ୍କ ନୀରବ ସ୍ତବରେ ନିଯୁକ୍ତ । ଜଗନ୍ନାଥଙ୍କ ଭୋଗ ଖୁବ୍ ଉତ୍କୃଷ୍ଟ ଧରଣର । ପ୍ରଥମ ବିକ୍ରମ ଦେବ ତାଙ୍କୁ ପ୍ରତିଷ୍ଠା କରିଥିଲେ । ବଡ ରାମଚନ୍ଦ୍ର ଦେବ ଜାମୁଗ୍ରାରୁ ନାରାୟଣ ମୂର୍ତ୍ତି ଏବଂ

ଭଗବତୀ ମୂର୍ତ୍ତି ଆଣି ଜୟପୁରରେ ସ୍ଥାପନ କରିଥିଲେ । ଭଗବତୀଙ୍କ ମୂର୍ତ୍ତି ପ୍ରକାଣ୍ଡ ପ୍ରସ୍ତର ନିର୍ମିତ । ତାଙ୍କ ସମ୍ମୁଖରେ ବାହନ କେଶରୀ ଦେବୀଙ୍କ ଧ୍ୟାନରେ ନିମଗ୍ନ । ବଲ୍ଲଭନାରାୟଣଙ୍କ ମନ୍ଦିରର ପ୍ରକାଣ୍ଡ ସିଂହଦ୍ୱାର ଶିଶୁ କାଠରେ ନିର୍ମିତ । ଦେହଳୀରେ ଜୟ, ବିଜୟ, ଲକ୍ଷ୍ମୀ, ସରସ୍ୱତୀ, ଗଣେଶ, ଗଜ, ଅଶ୍ୱ ଏବଂ ପଗର ସୁନ୍ଦର ମୂର୍ତ୍ତି ଖୋଦିତ ହୋଇଅଛି । ଉକ୍ତ ଦେହଳୀରେ ଲେଖାଅଛି, ଯଥା—"ଶ୍ରୀବଲ୍ଲଭନାରାୟଣ, ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା ବିଜୟନ୍ତେ, ଶ୍ରୀଶାଳି-ବାହନ ଶକାବ୍ଦ ୧୮୩୯ ପିଙ୍ଗଳା ନାମ ସମ୍ବତ୍ସରେ ଜ୍ୟେଷ୍ଠ ଶୁକ୍ଳ ଦଶମୀ ଗୁରୁବାର ଇଂରାଜୀ ୧୯୧୭ ସାଲ ମଇ ମାସ ତା ୩୧ ରିଖରେ ଏହି ବଲ୍ଲଭନାରାୟଣ ମନ୍ଦିର ନିର୍ମାଣ ପୂର୍ଣ୍ଣ ହେଲା । ମନ୍ଦିର କାରୟିତା ଶ୍ରୀମାନ ମହାରାଜ ସାର୍ ଶ୍ରୀ ଶ୍ରୀ ଶ୍ରୀ ବିକ୍ରମ ଦେବ ବାହାଦୁର, କେ, ସି, ଆଇ, ଇ, ଜୟପୁର ସଂସ୍ଥାନ । ନିର୍ମାଣ କର୍ମପରୀକ୍ଷକ—ଲିଙ୍ଗରାଜ ପାତ୍ର ।" ଜୟପୁର ରାଜାମାନଙ୍କର ସ୍ୱତନ୍ତ୍ର ଦେବାର୍ଚ୍ଚନ ହେଉଛି ନାହିଁ । ବଲ୍ଲଭନାରାୟଣଙ୍କ ମନ୍ଦିରରେ ଦେବାର୍ଚ୍ଚନ ହୁଏ । ମହାରାଜା ବିକ୍ରମ ଦେବଙ୍କ ପିତାମହ ମନୁଷ୍ୟଙ୍କୁ ଦେବତା ରୂପେ ପୂଜାକରିବା ବିଷୟର ଏକାନ୍ତ ବିରୋଧୀ ଥିଲେ । ତାଙ୍କର ଅମଳରୁ ସ୍ୱତନ୍ତ୍ର ଦେବାର୍ଚ୍ଚନ ରହିତ ହୋଇ ଇଷ୍ଟଦେବଙ୍କ ମନ୍ଦିରରେ ହେଉଅଛି । ପ୍ରତ୍ୟେକ ଦେବାଳୟରେ ଦେବମୂର୍ତ୍ତି ଏବଂ ପୂଜା ଆଡମ୍ବରରେ ହୁଏ । ନଅରର ପୂର୍ବଭାଗରେ ଯାତ୍ରାବନ୍ଧ ନାମରେ ଗୋଟିଏ ବନ୍ଧ ଅଛି ।

ଜୟପୁର ଗଡରେ ଗୋଟିଏ ମସଜିଦ୍ ଦେଖାଯାଏ । ରାଜଧାନୀରେ ପ୍ରାୟ ଏକଶତ ଘର ମୁସଲମାନ ଅଛନ୍ତି । ସେମାନଙ୍କର ଉପାସନା ସକାଶେ ମହାରାଜ ବିକ୍ରମଦେବ ବର୍ମା ଏହି ଧର୍ମମନ୍ଦିର ନିର୍ମାଣ କରିଦେଇ ଅଛନ୍ତି । ମହାରାଜାଙ୍କର ଏ ଉଦାର ସାମ୍ୟନୀତି ବାସ୍ତବିକ୍ ପ୍ରଶଂସନୀୟ । ଧର୍ମରେ ଇତର ବିଶେଷ ନାହିଁ, ସବୁ ଧର୍ମ ମୂଳରେ ଏକ ବ୍ରହ୍ମ ବିଦ୍ୟମାନ । ଏହା ଯେ ବୁଝନ୍ତି, ସେ ପ୍ରକୃତ ଧର୍ମଜ୍ଞ । ବିଧର୍ମୀକୁ ଘୃଣା ବା ଅବମାନନା କରିବା ମାନବର ଆଚରଣ ନୁହେଁ, ତାହା ପୈଶାଚିକ ବ୍ୟବହାର ।

ଜୟପୁର ସହର ସ୍ୱଭାବସୁନ୍ଦର, ପୁଣି ତାହାର ଚତୁର୍ଦ୍ଦିଗସ୍ଥ ପ୍ରକୃତି ସେହି ସୌନ୍ଦର୍ଯ୍ୟକୁ ବହୁଗୁଣିତ କରିଅଛି । ଗତ ଭାରତବ୍ୟାପୀ ମହାଭୂମିକମ୍ପ ଜୟପୁରକୁ ନାମମାତ୍ର ଅନୁଭୂତ ହୋଇଥିଲା । ଅଧିକାଂଶ ଲୋକ ତାହା ଜାଣି-ପାରି ନାହାନ୍ତି । ଜୟପୁର ଉପରି ପର୍ବତମୟ ପ୍ରଦେଶ, ତାହା ସହଜରେ ଅନୁ-

ମେୟ । ଯେଉଁଠି ପର୍ବତ, ସେହିଠି ସୌନ୍ଦର୍ଯ୍ୟ; ସୁତରାଂ ଜୟପୁରରେ ସୌନ୍ଦର୍ଯ୍ୟ ଅଶେଷ ମୂର୍ତ୍ତିରେ କ୍ରୀଡ଼ା କରେ । କେବଳ ନିସର୍ଗ ସମ୍ପଦ ନୁହେଁ—କୃତ୍ରିମ ସୌନ୍ଦର୍ଯ୍ୟରେ ମଧ୍ୟ ସେ ଶ୍ରୀସମ୍ପନ୍ନ । ଯେଉଁ ଅଞ୍ଚଳକୁ ଗଲେ ମେଡ଼, ମଣ୍ଡପ, ଦେଉଳ, ଅଟାଳୀ ପ୍ରଭୃତି ନେତ୍ରର ତୃପ୍ତି ସାଧନ କରେ । ସହର ପୁଷ୍ପୋଦ୍ୟାନମଣ୍ଡିତ ପ୍ରଭୃତି ଅଫିସ କମ୍ପା ରାଜକୀୟ କାର୍ଯ୍ୟାଳୟ ପାଖରେ ସୁନ୍ଦର ଉପବନ ଅଛି । କେବଳ ନାନା ଶ୍ରେଣୀୟ ଗୋଲାପ ଉଦ୍ୟାନ ଅନେକ ଦେଖାଯାଏ । ଫୁଲର ସୌରଭ ସୁନ୍ଦର ସହରକୁ ପଟ୍ଟା ନେଇଅଛି । ଏ ଅଞ୍ଚଳରେ ଗୋଲାପ ଫୁଲ ଫୁଟେ ବଡ଼ ହୁଏ । ରାଜକୀୟ ଉପବନ ଲୋଭନୀୟ ଦର୍ଶନୀୟ ସ୍ଥାନ । ବିବିଧ ବର୍ଣ୍ଣର ପୁଷ୍ପରେ ତାହା ଚାପିଅଛି । ବକୁଳ, କଦମ୍ବ, ବାସନ୍ତୀ ପୂର୍ଣ୍ଣିମାର ଜହ୍ନରେ ଜ୍ୟୋତ୍ସ୍ନା ଏବଂ ଶାଳପାଣ୍ଡୁ ଲତାର ମୋହନ ମାଧୁରୀ ସେଠାରେ ଏକାଧାରରେ ମିଳେ । ତାହା ପୁଷ୍ପରାଜ୍ୟ ।

ସରକାରୀ କୋର୍ଟ, ପୋଲିସ ଅଫିସ, ଚତୁଷ୍ପାଠୀ, ଡାକ୍ତରଖାନା, ଆୟୁର୍ବେଦ ଔଷଧାଳୟ, ଚିକିତ୍ସାଳୟ, ଧର୍ମଶାଳା, ଡାକ ଟେଲିଗ୍ରାଫ ଅଫିସ, ଫରେଷ୍ଟ ବିଭାଗୀୟ ଅଫିସ, ବଡ଼ ବଡ଼ ବ୍ୟବସାୟୀଙ୍କ ବାଣିଜ୍ୟ ଗୃହ ପ୍ରଭୃତି ସାହସିକ ଉପକରଣରେ ରାଜଧାନୀ ସୁଷମାମଣ୍ଡିତ । ଜୟପୁରରେ ସରକାର ତରଫରୁ ଜଣେ ଡେପୁଟି କଲେକ୍ଟର ଅଛନ୍ତି । ରେଜେଷ୍ଟ୍ରି ବିଭାଗ ସୁଦ୍ଧା ତାଙ୍କର ହାତରେ ଅଛି । ଜୟପୁରରେ ଇଉନିୟନ ବୋର୍ଡ଼ ମଧ୍ୟ ଅଛି ।

ମହାରାଜ ବିକ୍ରମ ଦେବଙ୍କର ଜଣେ ଆଇ· ସି· ଏସ୍· ଦେୱାନ ଅଛନ୍ତି । ତାଙ୍କର ନାମ D. Pulla Reddi Esq M. A, I. C S. । ତାଙ୍କର ସ୍ୱତନ୍ତ୍ର ଆବାସଗୃହ ଅଛି । ରାଜକୀୟ ପ୍ରତ୍ୟେକ ବିଭାଗ ସୁଶୃଙ୍ଖଳାରେ ପରିଚାଳିତ ହୁଏ । ବିକ୍ରମ ଦେବଙ୍କ ରାଜତ୍ୱରେ ଜୟପୁର ବର୍ତ୍ତମାନ ରାମରାଜ୍ୟରେ ପରିଣତ ହୋଇ ଅଯୋଧ୍ୟାର ସୌଭାଗ୍ୟ ଲାଭ କରିଅଛି ।

ରାତ୍ରରେ ନଗରୀ ବୈଦ୍ୟୁତିକ ଆଲୋକମାଳାରେ ବିଭୂଷିତ ହୋଇ ଅପୂର୍ବ ଶ୍ରୀ ଧାରଣ କରେ । ନଗରୀ ବହୁଦୂରରୁ ଫେଡ଼ ନଜର ଶୋଭା ଦେଖି ହସୁଥିବା ପ୍ରାୟ ବୋଧହୁଏ ଅଥବା ଜୟପୁର ରାଜଲକ୍ଷ୍ମୀ ରାଜରାଜେଶ୍ୱରୀ ବେଶରେ ସୁସଜ୍ଜିତ ହୋଇ ଦଣ୍ଡାୟମାନ ହୋଇଥିଲା ପରି ପ୍ରତୀତ ହୁଏ । ତେତେବେଳେ ନୈଶ ଅନ୍ଧକାର ଉପରେ ପଳାଇଯାଇ ନିକଟବର୍ତ୍ତୀ ଗିରିଗୁହାରେ ଲୁଚି ରହେ

କମ୍ପା ମାୟାଙ୍କ ହୃଦୟରେ ଆଶ୍ରୟ ନଏ । ଦେବୀଙ୍କ ସ୍ୱର ବିବିଧ ବାଦ୍ୟସ୍ୱରରେ ଗଜଗାମୀର ମଧୁମୟ ହୋଇଉଠେ । ଦୂର ବନ୍ତ ଅନ୍ଧାରରେ ମିଳାଇ ଯାଇ-ଥାଏ । ଗିରିଗୋଷ୍ଠୀ ଅନ୍ୟ କୌଣସି ଅଜ୍ଞାତ ସ୍ଥାନକୁ ଉଠିଚାଲି ଯାଇଥିବା ଭ୍ରମ ଜାତହୁଏ । ବେଳେ ବେଳେ ତାହାର ଜଳଉଠି ଗିରିର ଅସ୍ତିତ୍ୱ ପ୍ରମାଣ କରେ ।

ଜୟପୁରରେ ଶିଳ୍ପ ବାଣିଜ୍ୟ ଅଭିବୃଦ୍ଧିର ଚେଷ୍ଟା ଚାଲିଅଛି । ସେହି ଉଦ୍ଦେଶ୍ୟରେ ଏକ କାରଖାନା ସ୍ଥାପିତ ହୋଇଅଛି । ଏହା ଗୋଟିଏ ମହତ ଆଦର୍ଶ । ଦେଶକୁ ସ୍ୱତନ୍ତ୍ର ରୂପେ ଗଠନ କରିବାକୁ ହେଲେ ଏହିପରି ପ୍ରତ୍ୟେକ ସ୍ଥଳରେ ଆଦର୍ଶ ଦେଖାଇବା ଉଚିତ । ଏହାହିଁ ଗଠନମୂଳକ କାର୍ଯ୍ୟ । ଦେଶର ଅର୍ଥ ଦେଶରେ ନ ରହିଲେ ଜନସାଧାରଣ ହେବ କିପରି ? ବାହାରୁ ଅର୍ଥ ଆଣି ନ ପାରିଲେ ଦେଶର ଅବସ୍ଥା ସ୍ୱଚ୍ଛଳ ହେବ ନାହିଁ । କାରଖାନାଟି ବିଶ୍ୱକର୍ମଙ୍କର କର୍ମଶାଳା । ସେଥିରେ ବଢ଼େଇ, କମାର, କୁମ୍ଭାରମାନଙ୍କର କାର୍ଯ୍ୟ ହେଉଅଛି । ସେଠି ନୂତନ ନୂତନ ଶିଳ୍ପ ଗଠିତ ହେଉଅଛି । ଜୟପୁରରେ ଶିଳ୍ପର ଉପଯୋଗୀ ପ୍ରସ୍ତର, ମୃତ୍ତିକା ଏବଂ କାଷ୍ଠ ପ୍ରଭୃତିର ଅଭାବ ନାହିଁ । ଦୂର ସ୍ଥାନରୁ ମାଟି ଆଣି ଗୁରି ପ୍ରକାର ମାଟି ମିଶାଇ ଚୀନା ବାସନ ପ୍ରସ୍ତୁତ କରାଯାଉଅଛି । ଅପରେ ପ୍ରସ୍ତୁତ ଯେଉଁ ବାସନ ପ୍ରସ୍ତୁତ ହେଉଅଛି ତାହା ଚିକ୍କଣରେ ଅତି ଚମତ୍କାର । ତାହା ବଜାରର ଚୀନା ବାସନଠାରୁ କୌଣସିରେ ଊଣାକୁ ଏବଂ ନୋହୁଏ । କରତ କଳର କାଠକାଟ ବଡ଼ କୌତୁକପ୍ରଦ ଦୃଶ୍ୟ । ଦୁଇ ତିନି ମିନିଟ ମଧ୍ୟରେ ଘାତ ହାତ ଲମ୍ବର ବେଡିଆ କାଠ ଦେଖୁଁ ଦେଖୁଁ ଚିରା ହୋଇଯାଉଅଛି । କରତଟି ଚକାକାରରେ ଘୂରୁଅଛି । ସୁଦର୍ଶନ ଚକ୍ର ବିଷ୍ଣୁ ଦୈତ୍ୟଙ୍କୁ ଦୁଇଫାଳ କଲାପରି ଏହା ବଡ଼ ବଡ଼ କାଠକୁ ଅବଲୀଳାକ୍ରମେ ଚିରି ଦେଉଅଛି । କରତର ଧାର ବସିଗଲେ ଶାଣି ଯନ୍ତ୍ରେ ଯନ୍ତ୍ରେ ଅନ୍ୟ କଳ ତାକୁ ଶାଣ ଦେଇ ଦେଉଅଛି । କରତ ଶାଣ ଦେଲାବେଳେ ଭୂଇଁଚମ୍ପା ଫୁଲ ପରି ସୁନ୍ଦର ଅଗ୍ନିଫୁଲ ପୃଷ୍ଟ ହୋଇ ଉପରେ ଝଡ଼ି ଝଡ଼ି ଯଦୁବଂଶର ଦୃଶ୍ୟ ପରି ମୁହୂର୍ତ୍ତକେ ମିଳାଇ ଯାଉଅଛି । ଉହାପରି ଲୁହା ଢାଳିବ ପରି କଲାଅଛି । ଏହି ଲୁହା କଳରେ କାରଖାନାର ଆବଶ୍ୟକୀୟ ଯନ୍ତ୍ରପାତି ମଧ୍ୟ ପ୍ରସ୍ତୁତ ହେଉଅଛି । ଅନ୍ୟ ଏକ କଳରେ ମହୁଲ ମଞ୍ଜି ପେଡ଼ି ତେଲ ବାହାର କରାଯାଉଛି । କାମଫେନୁ ପରି କ୍ଷୀର ନର୍ଗତ ହେଲା ପ୍ରାୟ ମେ ଦୃଶ୍ୟ ବଡ଼ ଭାବପ୍ରବଣ । ଏହାକୁ ଟୋଲି ତେଲ କହନ୍ତି । ଏହି

ତେଲ ଜଳାଯାଏ । ଏହାର ଆଲୋକ ଉଜ୍ଜ୍ୱଳ, ସେଥିରେ ଚକ୍ଷୁର ପୀଡ଼ା ହୁଏ ନାହିଁ । କଳକାରଖାନାରେ ଏହି ତେଲ ବ୍ୟବହୃତ ହୁଏ ଓ ଦେଖିବାକୁ ଘିଅ ପରି ବହଳ । ବନ୍ୟଜାତିମାନେ ଘିଅ ପରିବର୍ତ୍ତରେ ଏହି ଟଳ ତେଲ ବ୍ୟବହାର କରନ୍ତି ।[6] କଳରେ ଇଟା ଏବଂ ଟାଇଲ ତିଆର ହେଉଅଛି । ଦିନରେ ନ୍ୟୂନ ହଜାର ଇଟା ତିଆର ହୁଏ । ଟାଇଲଗୁଡ଼ିକ ପଶୁ ପକ୍ଷୀ, ଲତା, ପୁଷ୍ପ ଏବଂ ହିନ୍ଦୁ ଦେବ ଦେବୀଙ୍କର ଶିଳ୍ପକଳାରେ ମଣ୍ଡିତ । ପୋଡ଼ାହେଲା ପରେ ସେଗୁଡ଼ିକ ବେଶ୍ ଲାଲ ହୁଏ । ମାଟିର ସଦୃଶ୍ୟ ଫୁଲକୁଣ୍ଡ ମଧ୍ୟ ମେସିନ ସାହାଯ୍ୟରେ ପ୍ରସ୍ତୁତ ହେଉଅଛି । ବରଫ କଳରେ ଉତ୍କୃଷ୍ଟ ବରଫ ତିଆର ହେଉଅଛି । ସମସ୍ତ କଳ ଗୋଟାଏ ବୃହତ୍ ଇଞ୍ଜିନ ଶକ୍ତିରେ ଚାଳିତ ହୁଏ । ମିଲମେନେଜର ମିଷ୍ଟର ଏଇଚ୍. ଏଇଚ୍. ଉଇଲସନ୍ ଏବଂ ସିଂହଳବାସୀ ଭୂତତ୍ତ୍ୱବିତ୍ ଡ଼ି. ଏସ୍. ପିଲାଇ ଉଭୟେ ଦକ୍ଷତାର ସହିତ କାରଖାନା ପରିଚାଳନ କରୁଅଛନ୍ତି । ଦୁହେଁ ସରଳ ସାଧୁପ୍ରକୃତିବିଶିଷ୍ଟ ଏବଂ ଅମାୟିକ । ସେମାନେ ଦର୍ଶକଙ୍କୁ ଆଗ୍ରହର ସହିତ ସେକ କାରଖାନା ଦେଖାନ୍ତି ଏବଂ ପୁରାତନ ସୁବନ୍ଧୁ ପରି ବ୍ୟବହାର କରନ୍ତି । ଏହି ଶିଶୁ କାରଖାନାଟି ବଟବୃକ୍ଷର ଅଙ୍କୁର ପରି ଦିନେ ବିରାଟ ମହାବୃକ୍ଷରେ ପରି-ଣତ ହୋଇ ଶାଖାପ୍ରଶାଖା ବିସ୍ତାରପୂର୍ବକ ଦେଶବିଖ୍ୟାତ ହେବ, ଏ ଭରସା ସମୀଚୀନ । ଏ ବୈଜ୍ଞାନିକ ଯୁଗରେ ପ୍ରକୃତିର ଶକ୍ତି ପୁଞ୍ଜୀଭୂତ ହୋଇ ଅଦ୍ଭୁତ କାର୍ଯ୍ୟ ସମ୍ପାଦନ କରୁଅଛି । ମନୁଷ୍ୟର ବୁଦ୍ଧିବୃତ୍ତି, ପ୍ରତିଭା, କର୍ମଶକ୍ତି ବିଜ୍ଞାନ ବଳରେ କେତେ ଦୂର ବିକଶିତ ହୋଇଅଛି, ତାହା କଳନା କରିହୁଏ ନାହିଁ । ବିଜ୍ଞାନ ବଳରେ ଅସାଧ୍ୟ କର୍ମ ସୁସାଧ୍ୟ ହେଉଅଛି ଏବଂ ଜଟିଳ କର୍ମପଥ ସରଳ ହେଉଅଛି । ବିଜ୍ଞାନର ଶକ୍ତି ଦୈବୀ ଶକ୍ତି ପରି ଅଦ୍ଭୁତ । ମନୁଷ୍ୟର ଶାରୀରିକ ବଳ ତାହା ତୁଳନାରେ ହେୟ ଏବଂ ନଗଣ୍ୟ ।

ଏହି କାରଖାନାର କରତକଳ ବର୍ତ୍ତମାନ ମହାରାଜ ସାହିତ୍ୟସମ୍ରାଟ ବିକ୍ରମଦେବ ବର୍ମା ମହୋଦୟଙ୍କର ଜ୍ୟେଷ୍ଠ ପିତୃବ୍ୟପୁତ୍ର ସ୍ୱର୍ଗତ ମହାରାଜ ସାର ତୃତୀୟ ବିକ୍ରମଦେବ କେ. ସି. ଆଇ. ଇ. ଙ୍କଦ୍ୱାରା ପ୍ରତିଷ୍ଠିତ । ତାଙ୍କ ପରେ ତାଙ୍କର ସୁଯୋଗ୍ୟ ପୁତ୍ର ମହାରାଜ ରାମଚନ୍ଦ୍ର ଦେବ ଚାଉଳକଳ ସ୍ଥାପନ କରି-ଥିଲେ । ଚୀନାମାଟିର କଳ ବର୍ତ୍ତମାନ ମହାରାଜ ଚତୁର୍ଥ ବିକ୍ରମଦେବ ବର୍ମାଙ୍କ ଅମଳରେ ହୋଇଅଛି । କରତ କଳରେ ପ୍ରସ୍ତୁତ କଡ଼, ବଗା, ପଟା ପ୍ରଭୃତି ରାଜ୍ୟବାସୀମାନେ ସୁଲଭ ମୂଲ୍ୟରେ କ୍ରୟ କରନ୍ତି । ମାତ୍ର ତାହା ବିଦେଶକୁ ଯିବା

ସୁବିଧା ଜନକ ନୁହେଁ । ଘାଟିପଥରେ ରେଳଷ୍ଟେସନକୁ ନେଲେ ଟର୍ଣ୍ଣା କଣା ମୂଲ୍ୟକୁ ବଳି ପଡ଼ିବ । ଜୟପୁରକୁ ରେଳପଥ ନ ହେବାଯାଏ ଏ ଅସୁବିଧା ଅନିବାର୍ଯ୍ୟ । 'ସାଲୁରଠାରୁ ଜୟପୁରକୁ ରେଳପଥ ହେଲେ କୌଣସି ବିଶେଷ ପ୍ରତିବନ୍ଧକ ଘଟିବ ନାହିଁ—କେବଳ ଇନ୍ଦ୍ରାବତୀ ନଦୀ ଏବଂ ଆଉ ଗୋଟିଏ ଦୁଇଟି କ୍ଷୁଦ୍ର ନାଳ ଉପରେ ପୋଲ କରିବାକୁ ହେବ । ସେ ପ୍ରତିବନ୍ଧକ ଅତି ନଗଣ୍ୟ । ଅର୍ଥସଙ୍କଟ କାଳ ପଡ଼ି ନ ଥିଲେ ଏତେବେଳକୁ ଜୟପୁର ଶାଖା ରେଳର କାର୍ଯ୍ୟ ଯଥେଷ୍ଟ ଅଗ୍ରସର ହୋଇଥାଆନ୍ତା । ଯାହା ହେଉ ଅଦୂରଭବି-ଷ୍ୟତରେ ଯେ ଜୟପୁରକୁ ଶାଖାରେଳପଥ ପଡ଼ିବ; ଏହା ନିଃସନ୍ଦେହ । ତଦ୍ଦ୍ୱାରା ରାଜ୍ୟର ବକ୍ସବାଣିଜ୍ୟର ଉନ୍ନତି ସଙ୍ଗେ ସଙ୍ଗେ ରେଳଓ୍ୱେ କୋମ୍ପାନୀର ମଧ୍ୟ ଆୟ ବୃଦ୍ଧି ହେବ । ସେତେବେଳେ ଏହି କାରଖାନା ବିରାଟ ଆକାର ଧାରଣ କରିବ ।

'ବିଶାଳ ପ୍ରଦର୍ଶନୀ ଗୃହ ଜୟପୁରର ବିଶେଷତ୍ୱ । ଜୟପୁରରେ ଯାହା ଅଛି, ତାହା ଏହି ପ୍ରଦର୍ଶନୀ ଗୃହରେ ପୁଞ୍ଜୀଭୂତ । ସୁତରାଂ ପ୍ରଦର୍ଶନୀଟି ଜୟପୁରର କ୍ଷୁଦ୍ର ସଂସ୍କରଣ ବା ସଂକ୍ଷିପ୍ତସାର । ତାହା ଦେଖିବା ବିଷୟ. ଲେଖି ଶେଷ କରି-ହେବ ନାହିଁ । ଜୟପୁରରେ ଯେତେ ପ୍ରକାର ଉତ୍କୃଷ୍ଟ କାଠ ଅଛି, ସେ ସବୁର ଆଦର୍ଶ ପ୍ରଦର୍ଶନୀରେ ସଜ୍ଜିତ ଏବଂ ରକ୍ଷିତ ହୋଇ ରହିଅଛି । କେବଳ ଚନ୍ଦନ କାଠର ନମୁନା ଦେଖାଯାଏ ନାହିଁ । ରାଜ୍ୟରେ ଚନ୍ଦନ ଗଛର ଅପ୍ରଚୁରତା ନାହିଁ; ତଥାପି ତାହା କାହିଁକି କେଜାଣି ରକ୍ଷିତ ହୋଇ ନାହିଁ । ଦୁଇଟି ମୃତ ବ୍ୟାଘ୍ରକୁ ଜୀବନ୍ତ ପରି ରଖାଯାଇଅଛି । ସେମାନେ ଶିକାର ଠାଣିରେ ଠିଆହୋଇ ଅଛନ୍ତି । ଶରୀର ଏବଂ ଚେହେରା ଟିକିଏ ହେଲେ ଶୁଷ୍କ ବା ମଳିନ ଦେଖାଯାଉ ନାହିଁ । ପ୍ରଥମ ଦୃଷ୍ଟିରେ ଜୀବନ୍ତ ପ୍ରାୟ ଭୟ ବୋଧହୁଏ । ଜୟପୁରୀ ବାଘ ଖୁବ୍ ଲମ୍ବ । ଗୋଟିକର ଲମ୍ବ ଏଗାର ଫୁଟ ତିନିଇଞ୍ଚ ଏବଂ ଅନ୍ୟଟି ଦଶଫୁଟ ନ ଇଞ୍ଚ । ଗୃହ ଭିତରେ ଗୋଟିଏ ମହାବଳ ବାଘର ଖୋଲ ମୁଣ୍ଡ ସହିତ ଟଙ୍ଗା ହୋଇଅଛି । ତାହାର ଦାନ୍ତ ସ୍ଥୂଳ ବ୍ୟକ୍ତିର ବୁଢ଼ା ଅଙ୍ଗୁଳିଠାରୁ ମୋଟା । ସେ ବ୍ୟାଘ୍ରଲୀଳା ସମ୍ବରଣ କରି ହାଡ ମାଂସ ଶୂନ୍ୟ ହୋଇ ସୁଦ୍ଧା ଅତ୍ୟନ୍ତ ଭୟଙ୍କର । ସେହିପରି ଦୁଇଗୋଟା ମୃତ ଭାଲୁ ଜୀବନ୍ତ ପ୍ରାୟ ଠିଆହୋଇ ଅଛନ୍ତି । ଗୋଟାକର ଲମ୍ବ ଛଅ ଫୁଟ ଛଅଇଞ୍ଚ, ଅନ୍ୟଟି ତାହାଠାରୁ ଟିକିଏ ସାନ । ଦୁଇଟା ବୃହତ୍ ହାତୀ ଦାନ୍ତ ରକ୍ଷିତ ହୋଇଅଛି । ଗୋଟାକର ଓଜନ ୩୪ ପାଉଣ୍ଡ, ଦ୍ୱିତୀୟଟା ୩୧ ପାଉଣ୍ଡ । ବଡଦାନ୍ତର ଲମ୍ବ ପାଞ୍ଚ ଫୁଟ ତିନି ଇଞ୍ଚ, ମୋଟ ଏକ ଫୁଟ ଦୁଇଇଞ୍ଚ ।

ଗୋଟାଏ କଳଥାଟି ଦନ୍ତର ଓଜନ ୩୬ ପାଉଣ୍ଡ ବା ୧୮ ସେର । ଏଥିରୁ ଅନୁମିତ ହୁଏ ହାତୀଟାର ଆକାର ପ୍ରକାଣ୍ଡ ଶିଖରଡ଼ା ପରି ହୋଇଥିବ । ତାହାର ଦନ୍ତଭୂଷଣ ପିତ୍ତଳକଡ଼ାମାନ ବଡ଼ ଗଜମୁଦ୍ଧଠାରୁ ବଡ଼ । ଶତାବାଘ ଓ ମାର୍କଣ୍ଡର ଅସ୍ଥି କଙ୍କାଳ ପ୍ରେତରାଜ୍ୟର ପ୍ରଜା ପ୍ରାୟ ଠିଆହୋଇଅଛନ୍ତି । କଣମଁଛି, ମାଲ ଗାଈ, ଗଧିଆର କିଙ୍ଗୋଲ ମୁଣ୍ଡ ଏବଂ ଗୋଟାଏ ମୃତ ଶିଆଳ ରକ୍ଷିତ ହୋଇଅଛି । ପରଜା, ଗାଦବା ଶବର ପ୍ରଭୃତି ବନ୍ୟ ଜାତିର ଉପ୍ରବଶାଥ ଭିତ୍ତିଗାଥରେ ବିଲମ୍ବିତ । ପରଜା ଜାତି ଦୁଇ ଶ୍ରେଣୀରେ ବିଭକ୍ତ । ଯୋଡ଼ିଆ ପରଜା ଏବଂ ବାଦା ପରଜା । ଯୋଡ଼ିଆ ପରଜାଜାତୀୟ ସ୍ତ୍ରୀମାନେ ହାତ ଗୋଡ଼ରେ ରସ ଓ ପିତ୍ତଳର ଅଳଙ୍କାର ପିନ୍ଧନ୍ତି ଏବଂ ଝିଙ୍କ ଝଟକାଠି ମୁଣ୍ଡରେ ବାନ୍ଧନ୍ତି । ବନ୍ଧା ପରଜା ଜାତିର ସ୍ତ୍ରୀମାନେ ଶର ଜିଙ୍ଗା । ବନ୍ଧା ଶବର ଅର୍ଥ ଉଲଗ୍ନ । ସେମାନେ ୮/୯ ଆଙ୍ଗୁଳ ଓସାରର ଖଣ୍ଡେ କନା ଅଣ୍ଟାରେ ବାନ୍ଧିଥାଆନ୍ତି । କାଚ ଏବଂ କଉଡ଼ିମାଳରେ ସେମାନଙ୍କର ବେକଠାରୁ ଆଣ୍ଠୁ ପର୍ଯ୍ୟନ୍ତ ଢାଙ୍କି ହୋଇଥାଏ । ପ୍ରବାଦ ଅଛି—"ମାଚେରୁ ନଦୀରେ ସୀତା ସ୍ନାନ କଲାବେଳେ ସେମାନେ ତାଙ୍କୁ ଦେଖି ହସିଥିଲେ । ତହୁଁ ସୀତା ବିରକ୍ତ ହୋଇ ଅଭିଶାପ ଦେଇଥିଲେ, ତୁମ୍ଭେମାନେ ଜନ୍ମଜନ୍ମାନ୍ତରରେ ଉଲଗ୍ନ ହୋଇ ରହିବ । କେବଳ ଅଣ୍ଟାରେ ଖଣ୍ଡିଏ ଅଣଅସାରିଆ କନା ବାନ୍ଧିବ" ।

ଯୋଡ଼ିଆ ପରଜା ଜାତିର ସ୍ତ୍ରୀମାନେ ହାତ ଗୋଡ଼ରେ ଶଡ଼ା କୁଟାନ୍ତି । ସେମାନେ ପିତ୍ତଳର ଭରି ଭରି ଅଳଙ୍କାର ପିନ୍ଧନ୍ତି । ସେମାନେ ପରିଷ୍କାର, ପରିଚ୍ଛନ୍ନ ମୂର୍ତ୍ତି ସଦାନନ୍ଦମୟ । ପ୍ରଦର୍ଶନୀର ଏକ ସ୍ଥାନରେ ବନ୍ୟଜାତିର ସ୍ତ୍ରୀମାନଙ୍କର ଅଳଙ୍କାର ସଜ୍ଜିତ ହୋଇ ରହିଅଛି । କଂସାପିତ୍ତଳର ପ୍ରକାଣ୍ଡ ଖଡୁ, ଗୋଡ଼ବଳା ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ପଟେ ୨ ତାଡ଼, ଖଡୁ ଏବଂ ଗୋଡ଼ବଳାର ଓଜନ ସେରେ ଦୁଇସେରରୁ ଊଣା ନୁହେଁ । ନାକର ଲୁହାଦଣ୍ଡି ଦେଖିଲେ ହାସ୍ୟ ସମ୍ବରଣ କରି ହୁଏ ନାହିଁ । ତାହା ତିନ ଆଙ୍ଗୁଳ ପରିମିତ ଲମ୍ବ ଏବଂ ତଦୁପଯୋଗୀ ଓସାର । ସେ ଦଣ୍ଡୀ ପାଟି ଉପରେ ତାଙ୍କୁଣୀ ପରି ଝୁଲୁଥାଏ । ଖାଇବାବେଳେ ତାକୁ ବାମହସ୍ତରେ ଟେକି ଧରିବାକୁ ହୁଏ । ଏହା ଦଣ୍ଡୀ ପିନ୍ଧିବାର ଦଣ୍ଡ । ଏରୂପ ଅଳଙ୍କାର ସୌନ୍ଦର୍ଯ୍ୟ ବଢ଼ାଏ କି ବିକୃତ କରେ, ତାହା ସେହି ଦଣ୍ଡୀଧାରିଣୀ ମାନେ ଜାଣିଥିବେ । ମାଡ଼ିଆ କଙ୍ଗା ଜାତୀୟ ସ୍ତ୍ରୀମାନେ ବି ଉଲଗ୍ନ । ସ୍ବରିଆଙ୍ଗ ଲ ବହଳର ଗଣ୍ଡିକଉଡ଼ିମାଳରେ ଛାତିଠାରୁ

ଆଣ୍ଠୁ ଯାଏ ଆଚ୍ଛାଦନ କରି ରହନ୍ତି । ସେମାନେ କଂସାପିତ୍ତଳର ଅଳଙ୍କାର ଧାରଣ କରନ୍ତି । ବେକ ଓ କାନର ଅଦ୍ଭୁତ ଗହଣା ବେଶ୍ ଦେଖିଲେ ସତେ ଯୋଥି ହେବ ।

ବନ୍ୟ ଜାତିମାନଙ୍କ ପୁତୁଳା ଗାଳିଆ ଅଧ ଚେହ ସଜ୍ଜିତ ହୋଇ ପ୍ରଦର୍ଶନୀ ଗୃହରେ ରଖାଯାଇଛି । ଧନୁ, ବାଣ, ଶାର୍ଙ୍ଗ, ଖଡ଼୍ଗ, ଢାଲ ପ୍ରଭୃତି କେତେ ଅଛି, ତାହା ସଂଖ୍ୟା କରିହେବ ନାହିଁ । ମାଛ ଧରିବାର ନାନା ପ୍ରକାର ଯନ୍ତ୍ର ମଧ୍ୟ ସଜ୍ଜିତ ହୋଇ ରହିଅଛି । ସେହିପରି ଅଗ୍ନି ଚେଞ୍ଚ, ଫେଣା, ଅସ୍ତ୍ରଶସ୍ତ୍ର ମଧ୍ୟ ତ୍ରୁଟି ହୋଇ ନାହିଁ । ନାନାଜାତିର ବନ୍ୟଜାତ ପଦାର୍ଥ ପ୍ରଦର୍ଶନୀରେ ଦେଖାଯାଏ । ଝୁଣା, ଲୁହା, କୁନ୍ଦୁରୁକ୍ତି, ଶୁଖୁଆ, ମଣ୍ଡୁର, ମହୁଫେଣା, ଡେଙ୍ଗକ-ପଥର, ହୋଳ, କୁସୁମତେଲ, ଝୁଣା, ବେଣାଚେର, ହରିଡ଼ା, ବାହାଡ଼ା, ଅଁଳା, ଭାଲିଆ, ପାଲୁଅ ଚୂନ, କାଫିମଞ୍ଜି ଟୁଲ, ମସିନା, କୁନ୍ଦେଇବୋଷ ପ୍ରଭୃତି କେତେ ଯେ ଅଛି, ସେଥିର କଳନା ନାହିଁ । ଧାନ, ମାଣ୍ଡିଆ, ଗବଦେଷ୍ୟ, ହୁଅଁ, ଗାଣ୍ଡିଆ, ଜନା, (ବାଜରା) କାଙ୍ଗ, ଖଇର ପ୍ରଭୃତି ପାତ୍ରରେ ଭିନ୍ନ ଭିନ୍ନ ହୋଇ ରହିଅଛି । ମାଟିର ପାତ୍ର; ପଥର ପିଆଲା, କଂସା ପିତ୍ତଳ ଓ ତମ୍ବା ବାସନ, ବେତ ଡିଙ୍ଗାର ବାକ୍ସ, କାଠର ସମାନ, କଳାମହାଭାରତ ସୁନ୍ଦର ବାକ୍ସ, ସେତୁଅ ପ୍ରଭୃତି ପାଣିବୁହା ଯନ୍ତ୍ର, କାଉଁଶପାଳୁଆ, ଡେଙ୍ଗ, ଡ଼ାଲ, ଜଉଘେଞ୍ଚ, ଜଉମାଳ, ଜଉ-ଚାମର, ମୟୂର ପୁଚ୍ଛ, ବନ୍ୟଜାତ ଔଷଧ ଚେର, ଛାଲି, ପତ୍ର, ଫଳ, ଫୁଲ ପ୍ରଭୃତି ସୁରକ୍ଷିତ ହୋଇଅଛି । ମୂଳରେ ଏତିକି କହିଲେ ଯଥେଷ୍ଟ ହେବ ଯେ, ପ୍ରଦର୍ଶନରେ ଯାହା ଅଛି, ମାତ୍ର ଦେଖିଲେ ତାହା ଚେରେ ଚେରେ ଜାଣିହେବ ନାହିଁ ।

[1]ଦରବାର ହଲ ଜୟପୁରର ଆଉ ଗୋଟିଏ ପ୍ରସିଦ୍ଧ ଦୃଶ୍ୟ । ପ୍ରକାଣ୍ଡ ହର୍ମ୍ୟ ମଧ୍ୟରେ ଏହି ହଲ ଅବସ୍ଥିତ । ହର୍ମ୍ୟଟି ସୁନ୍ଦର କାରୁକାର୍ଯ୍ୟ ଦ୍ୱାରା ଦୂରରୁ ଅତି ମନୋହର ଦିଶେ, ଯେପରି ନାଟକର ବାହୁକ ବହୁ ପଣ ହେଉ କି ପ୍ରବେଶକୁ ଟାଣୁଅଛି । ବହୁବର୍ଷ ଉତ୍କୃଷ୍ଟ ଚିତ୍ରକଳାରେ ହଲ ଅଳଙ୍କୃତ । ଭିତରକୁ ପ୍ରବେଶ କଲେ ବୋଧହୁଏ, ଏହା ମହେନ୍ଦ୍ର ଭବନ କିମ୍ବା କୁବେରର ଭଣ୍ଡାର ହେବ । ସ୍ୱର୍ଣ୍ଣ ଏବଂ ରୌପ୍ୟ ନିର୍ମିତ ଛତ୍ର, ଚାମର, ରାଜଦଣ୍ଡ, ଦରବାର, ଆଡାଣୀ, ପତାକା, ବିମାନ, ଅମାରି, ପାଲିଙ୍କି, ଦୋଳି, ଚୌକି, ଅର୍ଦ୍ଧଚୌକି, ସିଂହାସନ ଜ୍ୟୋତିରେ ଝଲକ ଉଠୁଅଛି । ସଜ୍ଜିତ ଝରଯୁକ୍ତ କାଚଦୀପର ଜ୍ୟୋତି ସେ ସମସ୍ତ ଜ୍ୟୋତିକୁ ପ୍ରଜ୍ଜ୍ୱଳ କରୁଅଛି । ମହାଆଡ଼ମ୍ବରରେ ଜ୍ୟୋତିରେ ମହୋତ୍ସବ ଲାଗିଅଛି । ପ୍ରତ୍ୟେକ ପଦାର୍ଥ ମନୋରମ ସୂକ୍ଷ୍ମ କାରୁକଳାରେ ଅଳଙ୍କୃତ ।

ହୀରାଗାଣ୍ଠ ବହୁମୂଲ୍ୟ ବସ୍ତ୍ରାବ ଆଚ୍ଛାଦିତ । ତାହା ଉପରେ ଥୋଡ଼ ଥୋଡ଼ ହୋଇ ସୁନ୍ଦର ଫ୍ରେମ ବେଷ୍ଟିତ ଫଟୋ ଟଙ୍ଗା ହୋଇଛି । ଫଟୋରେ କାନ୍ଥ ଦିଶିବାକୁ ନାହିଁ । ମାନ୍ଦ୍ରାଜ ଲାଟଙ୍କ ସହିତ ସ୍ୱର୍ଗୀୟ ରାଜା ରାମଚନ୍ଦ୍ର ଦେବଙ୍କର କର ମର୍ଦ୍ଦନ ଚିତ୍ର ଖଣ୍ଡେ କିନ୍ତୁ ଅତି ସ୍ୱାଭାବିକ ପ୍ରକାରରେ ଉଠାଇଅଛି । ମହାରାଜା ବିକ୍ରମଦେବ ବର୍ମାଙ୍କର ଦରବାର ବେଶ ଯୁଧିଷ୍ଠିରଙ୍କ ପରି ସରଳ, ନିରାଡମ୍ବର । ସେ ଜନକ-ରାଜାଙ୍କ ପରି ଆଦର୍ଶ ଗୃହୀ ଏବଂ ଆଦର୍ଶ ତପସ୍ୱୀ ମୂର୍ତ୍ତିରେ ସେହି ଭାବ ସୁସ୍ପଷ୍ଟ ଭାବରେ ଆତ୍ମପ୍ରକାଶ କରୁଅଛି । ଯେ ସାରସ୍ୱତ ରତ୍ନକୋଷରେ ମହାର୍ଘ ଦୁର୍ଲଭ ଜ୍ୟୋତିର୍ମୟ ଭୂଷଣ ମଣି, ତାହାର ପାର୍ଥିବ ରତ୍ନାଲଙ୍କାରରେ କି ପ୍ରୟୋଜନ ? ଜୟପୁରର ଭୂତପୂର୍ବ ରାଜାମାନଙ୍କର ତୈଳମୂର୍ତ୍ତି ଅନେକ ସୁନାମଧନ୍ୟ ବରେଣ୍ୟ ବ୍ୟକ୍ତିମାନଙ୍କର ଫୋଟ ଅତି ସତର୍କଭାବରେ ସୁରକ୍ଷିତ ହୋଇଅଛି । ଗୋଟିଏ ରୌପ୍ୟସିଂହର ଠାଣି ବଡ଼ ଚମତ୍କାର । ପଶୁରାଜାର ନିର୍ଭୀକ ଉଦାର ଦୃଷ୍ଟି, ଗମ୍ଭୀର ମୂର୍ତ୍ତି ଯଥାଯଥ ହୋଇଅଛି । ହସ୍ତୀଦନ୍ତ ଖୋଦିତ ଭକ୍ତି ଆକର୍ଷଣୀ ଦଶା-ବତାର ମୂର୍ତ୍ତି ଦେଖିଲେ ତାହା ହସ୍ତନିର୍ମିତ ବୋଲି ବୋଧ ହୁଏ ନାହିଁ । ତାହା ରାଜାଙ୍କ ଆରାଧ୍ୟ ଦେବତା ରାଧାକୃଷ୍ଣଙ୍କ ଯୁଗଳ ମୂର୍ତ୍ତିର ପ୍ରଭାମଣ୍ଡଳ ହୋଇଅଛି । ହଲ୍ ତଳେ ବହୁରଙ୍ଗୀ ମସୃଣ ମାର୍ବଲ ପଥର ବିଛା ହୋଇଅଛି । ସତେ ଯେପରି ଇନ୍ଦ୍ରଧନୁ ଆକାଶରୁ ଖସିପଡ଼ି ଗୁରୁ ଅଘାତରେ ମୂର୍ଚ୍ଛିତ ହୋଇ ରହିଅଛି । ଦ୍ୱାରର ଭିତର ପାଖରେ ଦୁଇଜଣ ସୈନିକ ପୁରୁଷ ବନ୍ଧୁକ ଧରି ଦଣ୍ଡାୟମାନ । ଲୌହ ସାଞ୍ଜୁରେ ତାଙ୍କର ଆପାଦମସ୍ତକ ଆବୃତ । ଆଖି ଉପରେ ସୁଦ୍ଧା ସୂକ୍ଷ୍ମ ଲୌହଜାଲର ଆବରଣ ରହିଅଛି । ଗୋଡ଼ରେ ବୁଟ, ଜୋତା, ମୁଣ୍ଡରେ ଲୌହନିର୍ମିତ ସାହେବ ଟୋପି, ରୁଧାଁଣି ବାରେଟତ, ଖାଷଣ ଏବଂ ଗଞ୍ଜର, ହଠାତ୍ ଦୃଷ୍ଟିରେ ଦୁଇଜଣ ସଶସ୍ତ୍ର ଦୌବାରିକ ବୋଲି ଭ୍ରମ ଜାତ ହୁଏ । ମୂର୍ତ୍ତି ଦୁଇଟି ଦରବାର ବେଳେ ଦ୍ୱାରଦେଶରେ ରକ୍ଷିତ ହୁଏ । ଦରବାରର ସମସ୍ତ ସାଜ ସରଞ୍ଜାମ ହଲରେ ଗଚ୍ଛିତ ଥାଏ, ସାହା ଏରୂପ ଯତ୍ନ ସହ ରକ୍ଷିତ ଯେ, ସେଥିରୁ କେହି ପୁରୁଣା ହେବାକୁ ନାହିଁ—ସର୍ବଦା ନୂତନ ପରି ଦେଖାଯାଏ । ଦରବାର ହଲରେ ଯେତେ ଉପକରଣ ସଜ୍ଜିତ ଅଛି ତାହାସବୁ ଲେଖିଲେ ଖଣ୍ଡିଏ ସ୍ୱତନ୍ତ୍ର ପୁସ୍ତକ ହେବ । ସେଠାରେ ପ୍ରାଚୀନ ଏବଂ ଆଧୁନିକ ଉଭୟ ଶିଳ୍ପ ହାତ ଧରାଧରି ହୋଇ ରହିଅଛି । ପ୍ରାଚୀନ ପଦାର୍ଥସମୂହରେ ଇତିହାସର ଉପାଦାନ ଯଥେଷ୍ଟ ବିଦ୍ୟମାନ ।

ଦରବାର ହଲକୁ ଲାଗି ଅସ୍ତ୍ରାଗାର [10] । ତାହା ଦେଖିବାକୁ କୌତୁକପ୍ରଦ ହେଲେହେଁ ଯମପୁରୀ ସଦୃଶ ଭୀଷଣ । ସେଥିରେ ଯେତେ ଅସ୍ତ୍ରଶସ୍ତ୍ର ସାଜିହୋଇ ରହିଅଛି, ସ୍ୱୟଂ ମୃତ୍ୟୁର ଅସ୍ତ୍ରଶାଳରେ ସୁଦ୍ଧା ସେତେ ଥିବ କି ନାହିଁ ସନ୍ଦେହ । ତାହା ଦେଖିଲେ ମନୁଷ୍ୟ ମନୁଷ୍ୟମାରଣ ବିଦ୍ୟାରେ କେତେ ଉନ୍ନତି କରିଅଛି, ତାହା ସହଜରେ ଜଣାଯାଏ । ବିଜ୍ଞାନର ଅଦ୍ଭୁତ ଶକ୍ତି ଯେତେ ପ୍ରକାର ଉନ୍ନତି ଉଦ୍ଭାବନ କରିଅଛି, ସେଥି ମଧ୍ୟରେ ମାରଣ ଯନ୍ତ୍ରର ଉନ୍ନତି ସର୍ବାଧିକ ବିକାଶପ୍ରାପ୍ତ ହୋଇଅଛି । ଆଧୁନିକ ଯୁଗରେ ତାହା ମୂର୍ତ୍ତି କିମ୍ବା ସଭ୍ୟତାର ପରିମାପକ ହୋଇଅଛି । ଯେଉଁ ଜାତି ମୃତ୍ୟୁଅସ୍ତ୍ରର ଉଦ୍ଭାବନ ଯେତେ ଅଧିକ କରିପାରିଅଛି, ସେ ଜାତି ଜଗତରେ ସେତେ ଉନ୍ନତ ଏବଂ ସେତେ ସଭ୍ୟ । ଏଣିକି ନାନା ପ୍ରକାର ବିଷାକ୍ତ ମୃତ୍ୟୁବାଷ୍ପ ଅଣୁ ସାଂଘାତିକ ଅସ୍ତ୍ର ହୋଇ ବସିଲାଣି । ବୈଜ୍ଞାନିକ ଯୁଗରେ ମନୁଷ୍ୟ ମନୁଷ୍ୟକୁ ଖୁବ ମାରିଶିଖିଅଛି । ନିଜର ବଂଶଧ୍ୱଂସ ବିଦ୍ୟାରେ ମନୁଷ୍ୟ ଅତ୍ୟନ୍ତ ପ୍ରବୀଣ ହୋଇଉଠିଛି — ଏହା ତାହାର ଆଧ୍ୟାତ୍ମିକ ଉନ୍ନତି !! ପୂର୍ବକାଳରେ ମୁନିଋଷିମାନେ ଅଧ୍ୟାତ୍ମବିଦ୍ୟାର ଚରମ ସୀମାକୁ ଉଠିଥିଲେ; ମାତ୍ର ଏକାଳରେ ବୈଜ୍ଞାନିକ ଋଷିପୁଙ୍ଗବମାନେ ହତ୍ୟାବିଦ୍ୟାର ଚରମ ସୀମାକୁ ଚାଲିଗଲେଣି । ଏ ଚକ୍ରବୃଦ୍ଧିର ଶେଷ କେଉଁଠାରେ, ତାହା ଭାବିଲେ ଭୟରେ ଆତ୍ମା ଥରିଉଠେ । ଏ ଉନ୍ନତିର ଶେଷ କେଉଁଠିରେ ବୋଲି ପ୍ରଶ୍ନ କଲେ ଶୂନ୍ୟରୁ ଉତ୍ତର ମିଳେ — ଧ୍ୱଂସରେ । ତେବେ ମନୁଷ୍ୟ ସଭ୍ୟ ଶିକ୍ଷିତ ଏବଂ ଉନ୍ନତ ହୋଇ ଧ୍ୱଂସ ଆଡ଼କୁ ଧାଇଁଅଛି । ଧ୍ୱଂସହିଁ ତାହାର ଲକ୍ଷ୍ୟ । ଧ୍ୱଂସହିଁ ତାହାର ଆଦର୍ଶ । ଏହାପରେ ମନୋବୃତ୍ତି ଦେଖି ସଂସାରରେ ରହିବା ଅପେକ୍ଷା ବଣକୁ ପଳାଇ 'ହାହା ମଧୁସୂଦନ' ମନ୍ତ୍ର ଜପ କରିବା ମନ୍ଦ ନୁହେଁ । ହିଂସା, ହତ୍ୟା ଯେବେ ମାନବଜନ୍ମର ଚରମ ଲକ୍ଷ୍ୟ, ତେବେ ମନୁଷ୍ୟ ଜନ୍ମ ଅପେକ୍ଷା ପଶୁ ପକ୍ଷୀ ଜନ୍ମ ସହସ୍ର ଗୁଣରେ ଶ୍ରେୟ ।

ଅସ୍ତ୍ରାଗାରଟି ସ୍ୱୟଂ ରଣଚଣ୍ଡୀଙ୍କର ଆଖଡ଼ାଶାଳା । ତାହା ଭିତରେ ମୃତ୍ୟୁ ମୁଖବ୍ୟାଦାନ କରି ରହିଥିବା ପ୍ରାୟ ବୋଧ ହୁଏ । ସଂସାରର ଅନିତ୍ୟତା, କାଳର କରାଳ ତାଣ୍ଡବ ଲୀଳା, ନରପ୍ରାଣରେ ଦେବତ୍ୱ ସ୍ୱରୂପ ଦୟା କ୍ଷମାର ଅବହେଳା ପ୍ରଭୃତି ନାନା ଭାବ ଆସି ମନକୁ ଘେରି ପକାଏ । ମନୁଷ୍ୟର ଜୀବନରେ ମନୁଷ୍ୟ ମଧୁମହୋତ୍ସବ ଉପଭୋଗ କରେ, ଏହା ଭାବି ମନୁଷ୍ୟ ଜନ୍ମକୁ ଧିକ୍‌କାର କରିବାକୁ ଇଚ୍ଛା ହୁଏ । ଏଣେ କିଏ କେଜାଣି ଅଲକ୍ଷ୍ୟରେ

ଯାଇ ଅଗଣିତ ସ୍ତୂପର କେତେ ଅଲୌକିକ କାହାଣୀ କାନେ କାନେ କହି ବୁଲୁଥାଏ — ଇତିହାସର କେତେ ଅମାପୋର ପାଠ ମନେ ପଡ଼ିଯାଉଥାଏ । ଅସ୍ତ୍ରାଗାରରେ ବିଭିନ୍ନ ଢଙ୍ଗର ଦୁଇ ଶତାଧିକ ବନ୍ଧୁକ ଅଛି । ବାଡ଼ ବନ୍ଧୁକ ଖଣ୍ଡେ ସୁନ୍ଦର ହାତବାଡ଼ ପରି; ମାତ୍ର ଗୁପ୍ତରେ ତାହା ଭିତରେ ଯମ ଦୂତ ପରି ଆଗ୍ନେୟାସ୍ତ୍ର ରହିଅଛି । ଖଣ୍ଡା ସଂଖ୍ୟା ଗଣ୍ଡାକୁ ଅତିକ୍ରମ କରି ପଣର ଅନ୍ତର୍ଗତ ହୋଇଅଛି । ନଖରେ ଦଳ ଦଳ ହୋଇ ଜହ୍ନମାଛ ସପିଲ ପରି କାନ୍ଥରେ ମାଳ ମାଳ ଖଣ୍ଡା ସଜ୍ଜିତ । ସ୍ୱର୍ଣ୍ଣ ନିର୍ମିତ ପାଟଖଣ୍ଡା ଅତି ଗୌରବରେ ଘୋଡ଼ାହୋଇ ସୁନାଖାପ ଭିତରେ ନିଦ୍ରିତ । ଦରବାର ବେଳେ ଏହି ଖଣ୍ଡା ସିଂହାସନ ତଟରେ ରକ୍ଷିତ ହୁଏ । ସୁନାର ଢାଲ ମଧ୍ୟ ଅଛି । ବାଘ ନଖୀ ଛୁରି ତଳେ ଲୁହାର ତୀକ୍ଷ୍ଣ ନଖ ଲାଗିଅଛି, ତାହା ଅଙ୍ଗୁଳି ତଳେ ଲୁଚିରହେ । ସେହି ନଖରେ ଶତ୍ରୁକୁ ଭାଲୁ ପରି ଆମ୍ପୁଡ଼ି ଆଣିଲେ ସେ ଶୀଘ୍ର କ୍ଷତବିକ୍ଷତ ହୋଇ ଇହଲୀଳା ସମ୍ବରଣ କରେ । ମୂଳତଃ ଅସ୍ତ୍ରାଗାରରେ ୬୮ ପ୍ରକାର ଅସ୍ତ୍ରଶସ୍ତ୍ର ଅଛି । ପ୍ରତି ପ୍ରକାରର ଅସ୍ତ୍ର ଅନେକ ସଂଖ୍ୟାରେ ଅଛି । କେତେକ ପ୍ରକାର ଅସ୍ତ୍ରର ନାମ ନିମ୍ନରେ ଅଙ୍କିତ ହେଲା:—

୧ । ଖଣ୍ଡା—ଗୁପ୍ତ ଖଣ୍ଡା, ଖାମଣା ଖଣ୍ଡା, ସୁଟରଇ ଖଣ୍ଡା, ଧୂପ ଖଣ୍ଡା, କଟି ଖଣ୍ଡା । ୨ । କାଣ୍ଡ—କଇଁଚାଣ୍ଡି, ପୋଗା, ଯମଦାଢ଼, କଟାରି, ଗାଗଡ଼ା, ବୁର୍ଜୁଳା, ଗୁଳୁ, ବରେଇ, ଝଙ୍ଗାଡ଼କାଣ୍ଡ । ୩ । ଟାଙ୍ଗି— ପର୍ଶୁରାମ ଟାଙ୍ଗି, ଚଲପଛିଆ ଟାଙ୍ଗି, ମୋଟା ଟାଙ୍ଗି । ୪ । ଟାଙ୍ଗିଆ—ମୁଣ୍ଡି ଟାଙ୍ଗିଆ, ଫାଣ୍ଡି ଟାଙ୍ଗିଆ । ୫ । ଢାଲ—ପଟା, ଫରି । ୬ । ଭୂଷଣ—ପାବେଲୀ, ପଟିଛେଲ, ମୁକୁନ୍ଦପୁର ଛେଲୁ, ଭଲ, ଶିର୍ଙ୍ଗ ବାନାଟି । ୭ । ଧନୁ—କଷଣୀ ଧନୁ, ବାଟୁଳି ଧନୁ । ୮ । କାଣ୍ଡ—କେନା କାଣ୍ଡ, କଷଣୀ କାଣ୍ଡ, ଶଉର କାଣ୍ଡ, ହଟା କାଣ୍ଡ । ୯ । ଚକ୍ର । ୧୦ । ନଳୀ—ଓଡ଼ିଆ ନଳୀ, କେପୁ ନଳୀ, ଝକମକ ନଳୀ, ବାର ନମ୍ବର ନଳୀ, ବାଡ଼ ନଳୀ, ପବନ ନଳୀ, ରାଇଫୁଲ, ମେଗାବନ୍, ହାଣ୍ଡ୍ରମାର୍ଟିନ, ସଇଡର, ବ୍ରିଚଲୋଡ଼, କାମେଣ୍ଡ, ଓଡ଼ିଆ ପିସ୍ତଲ, କେପୁପିସ୍ତଲ, ରଭଲଭର, ତୋପ, ଟୋଟା ତୋପ । ୧୧ । କଡ଼ାବନ୍ଧୁ— ଟୋପର, ପଟୀ, ଦୋସ୍ତନା । ୧୨ । ବାଦ୍ୟଯନ୍ତ୍ର ।

ଏତଦ୍‌ବ୍ୟତୀତ ନାନାପ୍ରକାର କମାର, ଲୁହା ସାଞ୍ଜୁଣ ସାହେବ ଟୋପି ପରି ଲୁହା ଟୋପି, ପିତ୍ତଳ ଟୋପି, ଯମଦାଢ଼ ଅସ୍ତ୍ର, ଛଅଗାଁ ଛୁରୀ, ବର୍ଚ୍ଛା ଏବଂ

ହାତରେ ଧରି ଠିଙ୍ଗିବା ଅସ୍ତ୍ର ପ୍ରଭୃତି ଅସ୍ତ୍ରର ଅନେକ ଅଂଶ ଅଛି । ତନ୍ମଧ୍ୟ ବନ୍ଧୁକ ଖୁବ୍ ବଡ଼ ଏବଂ ମୋଟା । ଗୋଟାଏ ବନ୍ଧୁକକୁ ଦୁଇଜଣ ଟେକିବା କଷ୍ଟକର । ତାକୁ ଗଛରେ ବାନ୍ଧି ମାରିବାକୁ ହୁଏ । ସେହିପରି ବନ୍ଧୁକ ହାତରେ ଧରି ଲଢ଼ିବା ଭଳି ବୀରପୁରୁଷ ପୂର୍ବେ ଜୟପୁରରେ ଥିଲେ ବୋଲି ପ୍ରାଚୀନ ଲୋକେ କହନ୍ତି । ଅସ୍ତ୍ରକଣ୍ଟକିତ ଅସ୍ତ୍ରାଗାର ବିଷୟ ଅସ୍ତ୍ରର ଜ୍ୟୋତିରେ ଜ୍ୟୋତିର୍ମୟ । ସେ ଜ୍ୟୋତିରେ ଯାତକେକ ପଡ଼ିଲେ ଅତି ଉଗ୍ର ଜ୍ୟୋତି ଉତ୍ପନ୍ନ ହୁଏ । ସେତେବେଳେ ଅସ୍ତ୍ରାଗାରକୁ ଚାହିଁଲେ ଆଖି ବୁଜିହୋଇଯାଏ । ଅସ୍ତ୍ରା-ଗାରରେ କେତୋଟି ସୈନିକ ପୁରୁଷର ମୂର୍ତ୍ତିଅଛି । ସେମାନେ ଲୁହା ସାଞ୍ଜୁ ଓ ଲୁହା ଟୋପି ପିନ୍ଧି ସଦର୍ପ ବୀରଭଙ୍ଗୀରେ ଠିଆହୋଇ ଅଛନ୍ତି । ସାଞ୍ଜୁରେ ଅସ୍ତ୍ରଶସ୍ତ୍ର ଖଞ୍ଜାହୋଇଅଛି । ହସ୍ତରେ ଧନୁବାଣ ଧରି ଠିଆହୋଇଅଛନ୍ତି । ପୃଷ୍ଠଭାଗରେ ଶରପୂର୍ଣ୍ଣ ତୂଣୀର ବନ୍ଧା ହୋଇଅଛି । ମୂର୍ତ୍ତିଗୁଡ଼ିକ ଦୈତ୍ୟଦାନବ ମୂର୍ତ୍ତିର କ୍ଷୁଦ୍ର ସଂସ୍କରଣ । ଦେଖିଲେ ଭୟ ବୋଧ ହୁଏ । ପୂର୍ବେ ଏ ଦେଶରେ ଏହିପରି ପ୍ରକାଣ୍ଡକାୟ ବୀର ଥିଲେ, ଏହି ମୂର୍ତ୍ତି ସେଥିରେ ନୀରବ ସାକ୍ଷ୍ୟ ପ୍ରଦାନ କରୁଅଛି । ଏ ଅସ୍ତ୍ରାଗାରର ଅସ୍ତ୍ରଶସ୍ତ୍ର ସଂଖ୍ୟା ଅଗଣ୍ୟ ନ ହେଲେହେଁ ସାମାନ୍ୟ ନୁହେଁ । ପୂର୍ବେ ଉତ୍କଳୀୟ ବୀରମାନେ କିପରି ଅସ୍ତ୍ରଶସ୍ତ୍ର ବ୍ୟବହାର କରୁଥିଲେ, କିପରି ରଣବେଶରେ ସଜ୍ଜିତ ହେଉଥିଲେ, ସେଥିର ଐତିହାସିକ ପ୍ରମାଣ ଅସ୍ତ୍ରାଗାରରୁ ଯଥେଷ୍ଟ ମିଳେ । ଯେଉଁ ଜାତିର ବୀରତ୍ୱରେ ଗଙ୍ଗାଠାରୁ ସେତୁ-ବନ୍ଧଯାଏ ଅର୍ଦ୍ଧଭାରତ ବିକମ୍ପିତ ହେଉଥିଲା, ସେହି ବିଜୟୀ ବୀରମାନଙ୍କର ବଂଶଧରମାନେ ଖର୍ବକାୟ, ଭୀରୁ ଏବଂ କ୍ଲୀବ, ଏହା ଭାବିଲେ ଦାରୁଣ କ୍ଷୋଭ ଏବଂ ଦୁଃଖରେ ନେତ୍ର ଅଶ୍ରୁସିକ୍ତ ହୋଇଆସେ । ଯେଉଁମାନେ ଦୁର୍ଦ୍ଦାନ୍ତ ମହାବଳ ବ୍ୟାଘ୍ର ଏବଂ ମତ୍ତ ଦନ୍ତାବଳକୁ ପିମ୍ପୁଡ଼ି ପରି ହେୟ ଜ୍ଞାନ କରୁଥିଲେ, ସେହି-ମାନଙ୍କର ବଂଶଧର ଏବେ କୁକୁର ଭୁକିଲେ ଭୟ କରୁଅଛନ୍ତି । ହାୟ ସର୍ବଗ୍ରାସୀ କାଳର ଅସାଧ୍ୟ କଅଣ ଅଛି ? ଏ ଅଧୋଗତି—ଏ ଦୁର୍ଭାଗ୍ୟର ସାନ୍ତ୍ୱନା କଅଣ ଅଛି । ସାନ୍ତ୍ୱନା କେବଳ ହାହାକାର ଏବଂ ମର୍ମଦାହୀ ଉଷ୍ଣ ନିଃଶ୍ୱାସ ସିନା ! "କାଳସ୍ୟ କୁଟିଳା ଗତିଃ" ଏ ପ୍ରବଚନ ଅକ୍ଷରେ ଅକ୍ଷରେ ସତ୍ୟ ଏବଂ ସାର୍ଥକ ।

ନିଜ ପୂର୍ବପୁରୁଷଙ୍କ ଖ୍ୟାତି ଗୌରବ ବର୍ଣ୍ଣନା ଏକାଳରେ ସ୍ୱପ୍ନ ବା କାଳ୍ପନିକ ଉପନ୍ୟାସ ପରି ବୋଧ ହେଉଅଛି । ନିଜେ ଯେ ସେହି ମହିମିତ ବୀର ବଂଶର ବଂଶଧର, ଏହା ସ୍ୱପ୍ନରେ ବିଶ୍ୱାସ କରିହେଉନାହିଁ । ନିଜ ପ୍ରତି ନିଜର ଅବ-

ଶ୍ୱାସ ଜନ୍ମ ଅଛି । ଏ ଦୁର୍ଗତି ରଖିବାର ସ୍ଥାନ ନାହିଁ । ଯେଉଁ ଜାତିର ଅନୁପମ ବିପୁଳ କୀର୍ତ୍ତିକୁ ବିଦେଶୀୟମାନେ ମନୁଷ୍ୟର କୀର୍ତ୍ତି ବୋଲି ବିଶ୍ୱାସ କରିବାକୁ କୁଣ୍ଠିତ, ସେହି ଜାତି ଏବେ ଦରିଦ୍ର୍ୟପଞ୍ଚାକ୍ଷରୀ ମନ୍ତ୍ର ଜପ କରୁଅଛନ୍ତି । ଏହା କେଉଁ ପାପ ବା କେଉଁ ଅପଦେବତାର ଅଭିଶାପ ଫଳ, ତାହା କିଏ କହି-ପାରିବ ? ନାଗ ଶାବକ ମହାଳତା ହେଉଅଛି, ପୂର୍ବପୁରୁଷର ପ୍ରତିଷ୍ଠାକୁ ସଙ୍ଗାଳି କରି ଗର୍ବ ଅନୁଭବ କରୁଅଛି; ମାତ୍ର ଅଳଣା ଗର୍ବରେ କିଛି ଫଳ ନାହିଁ । ଯେଉଁ ଦିନ ସେ ବଂଶୀୟ ଗୌରବରେ ଖାଲି ଗର୍ବ ଅନୁଭବ ନ କରି ନିଜେ ସେହି ବଂଶର ଯୋଗ୍ୟ ହୋଇପାରି ନାହିଁ ବୋଲି ଅସହ୍ୟ ଲଜ୍ଜା ଅନୁଭବ କରିବ, ସେହିଦିନ ସେ ସେହି ବଂଶର ଯୋଗ୍ୟ ସନ୍ତାନ ହେବ ଓ ସେହିଦିନ ସେ ଅତୀତ ଉଚ୍ଚାଦର୍ଶର ଅନୁକରଣରେ ପ୍ରବୃତ୍ତ ହୋଇ ନିଜକୁ ଉନ୍ନତ ଭାବରେ ଗଠନ କରିବାକୁ ଶିଖିବ ।

[1] ଅସ୍ତ୍ରାଗାର ନିକଟରେ ନୂତନ ନଅର ତୋଳା ହେଉଥିଲା । କାର୍ଯ୍ୟ ପ୍ରାୟ ଶେଷ ହୋଇଆସିଥିଲା; କେବଳ ଉପରକାମ ସାମାନ୍ୟ ଅବଶିଷ୍ଟ ଥିଲା; ମାତ୍ର କି ଅମଙ୍ଗଳ ସୂଚନା ହେତୁ ତାହା ପରିତ୍ୟକ୍ତ ହୋଇଅଛି । ଯେଉଁ ରାଜନ-ବର ମଣିମାଣିକ୍ୟରେ ଝଲମଲ ହେଉଥାଆନ୍ତା, ଗୀତ ବାଦ୍ୟ, ଜନ କୋଳା-ହଳରେ ଚିରମୁଖରିତ ହେଉଥାଆନ୍ତା, ତାହା ଏବେ ଶୂନ୍ୟ ପୁରୀ ହୋଇଅଛି । ଭାଗ୍ୟ କେବଳ ମନୁଷ୍ୟର ନୁହେଁ, ଜଡପଦାର୍ଥର ବି ଭାଗ୍ୟ ଅଛି ।

---

1. କଥିତ ଅଛି ମହାରାଜା ରାମଚନ୍ଦ୍ରଦେବ ଜଗନ୍ନାଥ ସାଗର ଖୋଳାଇଥିଲେ । ଏହି ସରୋବରର ଆୟତନ ବର୍ତ୍ତମାନ ସଙ୍କୁଚିତ । ଏହା ପୋତି ହୋଇଯିବା ଭୟରେ । ଏହାର ପୁନରୁଦ୍ଧାର ସହରର ବହୁ ପ୍ରକାର ଆବଶ୍ୟକତା ପୂରଣ କରିବ ।

2. ବର୍ତ୍ତମାନ ପୁରୁଣାଗଡ଼ ଏକ ଧ୍ୱଂସସ୍ତୂପ ମାତ୍ର । ଜୟପୁର ସହରର ପୂର୍ବଦିଗରେ ପ୍ରାଚୀର ସଦୃଶ ଏକ ପର୍ବତମାଳାର ପାଦଦେଶରେ ବର୍ତ୍ତମାନର ସରକାରୀ ବାଳକ ଉଚ୍ଚ ବିଦ୍ୟା-ଳୟର ଅନତିଦୂରରେ ଏହା ଅବସ୍ଥିତ ଥିଲା । ମାଟି ନିର୍ମିତ ଏହି ସୁଦୃଢ଼ ଦୁର୍ଗ 1775 ମସିହାରେ ଇଂରେଜ କ୍ୟାପଟେନ୍ ମାଥ୍ୟୁସଙ୍କ ଆକ୍ରମଣରେ ବିଶେଷ କ୍ଷତିଗ୍ରସ୍ତ ହୋଇଥିଲା । ପରେ ରକ୍ଷଣାବେକ୍ଷଣର ଅଭାବରୁ ଏହା ଧ୍ୱଂସସ୍ତୂପରେ ପରିଣତ ହୋଇଅଛି । ଏହି ଦୁର୍ଗର ପ୍ରାଚୀରର ଉଚ୍ଚତା 20 ଫୁଟ ଥିଲା ଏବଂ 20 ଫୁଟ ଗଭୀରର ଏକ ପରିଖା ଦ୍ୱାରା ଏହା ସୁରକ୍ଷିତ ଥିଲା । ମହାରାଜା ବିକ୍ରମଦେବ ବର୍ମା ନୂଆ ରାଜପ୍ରାସାଦ ନିର୍ମାଣ

କଲେ ଏବଂ ଦରବାର ହଲର ପଥପଟକୁ ଏହା ନିର୍ମିତ ହୋଇଥିଲା । ଏହାର ସମ୍ମୁଖ ଦ୍ୱାର ରାମେଶ୍ୱର ମନ୍ଦିର ଅଭିମୁଖେ ଥିଲା । ଏହା ଅତି ଉଚ୍ଚ ଦୃଢ଼ ପ୍ରାଚୀର ପରିବେଷ୍ଟିତ । କବିଶେଖରଙ୍କ ଜୟପୁର ଆଗମନକାଳରେ ଏହା ନିର୍ମାଣାଧୀନ ଥିଲା ।

3. ଜୟପୁରର ପୁରୁଣା ଜଗନ୍ନାଥ ମନ୍ଦିରର ନାମ ବଲ୍ଲଭ ନାରାୟଣ ମନ୍ଦିର । ଏହି ମୁଖ୍ୟ ମନ୍ଦିରରେହିଁ ଜଗନ୍ନାଥାଦି ଚତୁର୍ଦ୍ଧାମୂର୍ତ୍ତି ସମେତ ଅନ୍ୟ ଦେବଦେବୀ ପୂଜିତ ହେଉଥିଲେ । ବଲ୍ଲଭ ନାରାୟଣଙ୍କ ଗୌରବ୍ୟ ମେଢ଼ କିମ୍ବା ସେଦିନର ମନୋରମ ପରିବେଶ ଆଜି ଅଉ ନାହିଁ । ଅବଶ୍ୟ ଅଦୂରରେ ନିର୍ମାଣାଧୀନ ଏକ ସୁଦୃଶ୍ୟ ମନ୍ଦିରରେ ଜଗନ୍ନାଥାଦି ଚତୁର୍ଦ୍ଧାମୂର୍ତ୍ତି ବିରାଜିତ । ସମସ୍ତଙ୍କ ସହଯୋଗର ହାତ ବଢ଼ି ଆସିଲେ ଏ ସ୍ଥଳ ପୁଣି ମନୋରମ ହୋଇଉଠିବ ।

4. **O. Pulla Reddy, I. C. S.,** ଯଏକି ପରବର୍ତ୍ତୀ ସମୟରେ ନବଗଠିତ ଆନ୍ଧ୍ର ପ୍ରଦେଶର ପ୍ରଥମ ଚିଫ୍ ସେକ୍ରେଟାରୀ ଏବଂ ପରେ ଚୀନ୍-ଭାରତ ଯୁଦ୍ଧ ସମୟରେ ଭାରତ ସରକାରଙ୍କ ଦେଶରକ୍ଷା ବିଭାଗର ସଚିବ ରହିଥିଲେ, କିଛିକାଳ ପାଇଁ ଜୟପୁର ଜମିଦାରୀରେ ଦେବାନ୍‌ରୂପେ ନିଯୁକ୍ତି ପାଇଥିଲେ । ଜୟପୁର ଜମିଦାରୀକୁ ଓଡ଼ିଶା ସହିତ ମିଶାଇବା ଦିଗରେ ବିକ୍ରମଦେବଙ୍କ ସମସ୍ତ ଉଦ୍ୟମକୁ ପଣ୍ଡ କରିବା ପାଇଁ ସେ ଚକ୍ରାନ୍ତ ଚଳାଇଥିବା ଜଣାଯାଏ ।

5. ବଜାରର ଚୀନାବାସନଠାରୁ ବହୁଗୁଣରେ ଉତ୍କୃଷ୍ଟ ଏବଂ ଲୋଭନୀୟଭାବେ ପ୍ରସ୍ତୁତ ଜୟପୁରର ଚୀନାବାସନ ଶିଳ୍ପର ପୁନରୁଦ୍ଧାର ପାଇଁ ସରକାରୀ ତଥା ବେସରକାରୀ ସ୍ତରରେ ପ୍ରଚେଷ୍ଟା ଆରମ୍ଭ ହେବା ଉଚିତ୍ ମନେହୁଏ ।

6. କଳ ତିଆରି ଇଟା ଓ ଟାଇଲ କାରଖାନା କ'ଣ ପୁଣି ଖୋଲାଯାଇ ପାରିବ ନାହିଁ ?

7. କବି ଶେଖର ଚିନ୍ତାମଣି ମହାନ୍ତି ସାଲୁରୁଠାରୁ ଜୟପୁରକୁ ରେଳରାସ୍ତାର ସ୍ୱପ୍ନ ସେତେବେଳେ ଦେଖିଥିଲେ । ପରବର୍ତ୍ତୀକାଳରେ ସ୍ୱାଧୀନ ଭାରତରେ ଜୟପୁର, କୋରାପୁଟ ଦେଇ ବିଶାଖାପାଟଣାଯାଏ ରେଳରାସ୍ତା ତିଆରି ହୋଇ ପ୍ରତ୍ୟହ ମାଲବୁହା ଚାଲିଛି । କିନ୍ତୁ ଏହି ଅଞ୍ଚଳ ଏହାଦ୍ୱାରା କୌଣସି ପ୍ରକାରେ ଉପକୃତ ହୋଇନାହିଁ । କଲିକତା ଓ ମାନ୍ଦ୍ରାଜକୁ ଯୋଡ଼ିବା ପାଇଁ ଯେପରି ଓଡ଼ିଶା ଦେଇ ରେଳପଥ ତିଆରି କରିବା ଆବଶ୍ୟକ ହୋଇଥିଲା, ସେପରିହିଁ ଜୟପୁର, କୋରାପୁଟଦେଇ ରେଳପଥ ତଥା ନିର୍ମାଣାଧୀନ ରାୟଗଡ଼ା ରେଳପଥ ଏ ଅଞ୍ଚଳର ତଥାକଥିତ ଉନ୍ନତିକଳ୍ପେ ତିଆରି ହୋଇଥିବା ଦେଖାଯାଏ । ବଡ଼ ଲୋକେ କୁହନ୍ତି, 'ଶୋଇଲା ପୁଅର ଭାଗ ନାହିଁ' । କୋରାପୁଟିଆ କେବେ ଉଠିବେ କିଏ ଜାଣେ ?

8. ବର୍ତ୍ତମାନର ସୂର୍ଯ୍ୟମହଲହିଁ ଥିଲା ବର୍ଣ୍ଣିତ ବିଶାଳ ପ୍ରଦର୍ଶନୀ ଗୃହ । ପ୍ରାୟ ସମସ୍ତ ପ୍ରଦର୍ଶିତ ଜିନିଷ ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ଏବଂ ରେକର୍ଡ ପତ୍ର ରାଜ୍ୟ ଅଭିଲେଖାଗାରକୁ ଚାଲିଯାଇଛି । ଏହାର ପୁନରୁଦ୍ଧାର ପାଇଁ ପ୍ରଚେଷ୍ଟା ଆବଶ୍ୟକ ମନେହୁଏ ।

9. ଦରବାର ହଲ ଓ ନୂଆଗଡ କୋଠା (ବର୍ତ୍ତମାନ ଯାହାକୁ ପୁରୁଣା ରାଜପ୍ରାସାଦ କୁହାଯାଉଛି) ବର୍ତ୍ତମାନ ଶ୍ରୀହୀନ । ଜୟପୁର ରାଜପରିବାରର ଉତ୍ତରାଧିକାରୀଗଣଙ୍କ ପକ୍ଷରେ ଏହାର ରକ୍ଷଣାବେକ୍ଷଣ ସଂଭବପର ମନେ ହୁଏନି । ଓଡ଼ିଶା ସରକାର ଏ ଦିଗରେ ଆଗେଇ ଆସିବା ଉଚିତ ।

10, ଅସ୍ତ୍ରାଗାରର କେତେକ ଅସ୍ତ୍ର ବର୍ତ୍ତମାନ ପୁଲିସ୍ ସୁପରିଟେଣ୍ଡେଣ୍ଟଙ୍କ କାର୍ଯ୍ୟାଳୟରେ ସୁରକ୍ଷିତ ରହିଛି । ଅନ୍ୟସବୁ ରାଜ୍ୟ ସଂଗ୍ରହାଳୟରେ । କୋରାପୁଟରେ ନବ ପ୍ରତିଷ୍ଠିତ ଆଦିବାସୀ ସଂଗ୍ରହାଳୟରେ ଏହାର ସ୍ଥାୟୀ ପ୍ରଦର୍ଶନୀ ପାଇଁ ସରକାରଙ୍କ ସହ ଯୋଗାଯୋଗ ଚାଲିଛି ।

11. ନୂଆଗଡର ନୂଆ ନଅର କଥା ପୂର୍ବରୁ କୁହାଯାଇଛି । ସେସମୟରେ ତିଆରି ହୋଇଥିବା ନୂଆ ନଅର ଆଜି ଶ୍ରୀହୀନ ।



## ତୃତୀୟ ପରିଚ୍ଛେଦ

ମହାରାଜ ବିକ୍ରମଦେବ ବର୍ମାଙ୍କ ରାଜତ୍ୱରେ ଜୟପୁର ଉତ୍କଳରେ ଉତ୍କୃଷ୍ଟିମାଶୋଭା ଧାରଣ କରିଅଛି । ସେଠାରେ ପ୍ରକୃତି କୋଟି କୁବେରର ଅନନ୍ତ ଅମୂଲ୍ୟ ନିଧିର ପ୍ରଦର୍ଶନୀ ବସାଇଅଛି । ଜୟପୁର ଅମରା ଅଳକା ଉଭୟର ଶ୍ରୀସମ୍ପଦ ଲୁଟିକରି ଆଣିଅଛି । କେଉଁଠାରେ କେତେ ଦୁର୍ଲ୍ଲଭ ବୈଚିତ୍ର୍ୟପୂର୍ଣ୍ଣ ଅପୂର୍ବ ସୁଷମା ବନ ପଶୁପକ୍ଷୀର ଉପଭୋଗ୍ୟ ହୋଇଅଛି, କେଉଁଠି କେତେ ଅମୂଲ୍ୟ-ରତ୍ନ ଲୋକଲୋଚନର ଅଗୋଚରରେ ପଡ଼ିରହିଅଛି, କେଉଁଠାରେ ବା ପ୍ରକୃତିର କେତେ ମହାଶକ୍ତି ବନପର୍ବତରେ ମିଳାଇ ଯାଉଅଛି, ତାହାର ଇୟତ୍ତା ନାହିଁ । ଜୟପୁରରେ ଅନେକ ପ୍ରସିଦ୍ଧ ସ୍ଥାନ ଏବଂ ତୀର୍ଥ ସ୍ୱରୂପ ଶିବମନ୍ଦିର ବିଦ୍ୟମାନ । ମାଲ-କଣ୍ଠେଶ୍ୱର ପ୍ରତାପୀ ମହାଦେବ । ଏକାଗ୍ରଚିତ୍ତରେ ତାଙ୍କର ଧ୍ୟାନଧାରଣା କଲେ ରୋଗ, ବିପଦରୁ ମୁକ୍ତି ମିଳେ । ଦିନେ ଦିନେ ତାଙ୍କ ପୀଠସ୍ଥାନକୁ ତୀର୍ଥ-ଯାତ୍ରୀ ପରି ଦଳ ଦଳ ହୋଇ ଲୋକ ଧାଇଁବାରେ ଦେଖାଯାଏ । ଏହି ଶିବ ଜୟ-ପୁରର କ୍ଷେତ୍ରପାଳ ରୂପେ ଗଡ଼ର ଉପକଣ୍ଠବର୍ତ୍ତୀ ଶାନ୍ତିମୟ ନିର୍ଜ୍ଜନ ସ୍ଥାନରେ ଅବ-ସ୍ଥିତ । ସ୍ଥାନଟି ଯୋଗ ସାଧନର ଉପଯୁକ୍ତ । ତେଣୁ ମହାଯୋଗିବର ଶଙ୍କର ସେ ସ୍ଥାନକୁ ନିଜର ପ୍ରିୟ ଯୋଗପୀଠ ରୂପେ ବାଛିନେଇଅଛନ୍ତି । ଗଡ଼ର ଦକ୍ଷିଣରେ ପଞ୍ଚମୁଖେଶ୍ୱର ବା ପଞ୍ଚାନନ ନାମଧେୟ ପ୍ରସିଦ୍ଧ ଶିବଙ୍କର ମନ୍ଦିର ଧରଣୀର ମାନଦଣ୍ଡ ରୂପେ ଦଣ୍ଡାୟମାନ । ପଞ୍ଚାନନ ଠାକୁରର ଗୁହାରି ଦକ୍ଷିଣ କର୍ଣ୍ଣରେ ଶୁଣନ୍ତି । ଶିବଙ୍କର ମହିମାରେ ସ୍ଥାନୀୟ ଲୋକଙ୍କର ପୂର୍ଣ୍ଣବିଶ୍ୱାସ । ତାଙ୍କର ସେବା ପୂଜାର ବ୍ୟବସ୍ଥା ରାଜୋଚିତ ବିଧିରେ ଚଳେ । ଜୟପୁର ରାଜଲକ୍ଷ୍ମୀଙ୍କର ଷୋଡ଼ଶୋପଚାରରେ ପୂଜା ପାଇ ଏବଂ ରାଜଭୋଗରେ ଭୋଳ ହୋଇ ଭୋଳାନାଥ ପ୍ରିୟ ରାଜଧାନୀ କୈଳାସ ପାଟଣାକୁ ଭୁଲିଯାଇଅଛନ୍ତି । କେହି କେହି ପଞ୍ଚାନନ ମନ୍ଦିରରେ ଜପ କରି ସିଦ୍ଧମନୋରଥ ହୋଇଥିବାର ଶୁଣାଯାଏ । ସେଠାରେ ପ୍ରବେଶ ମାତ୍ରେ ସ୍ଥାନ ପ୍ରଭାବରେ ଗୋଟାଏ ଅଦ୍ଭୁତ ପବିତ୍ରତା ଏବଂ ଦେବଭାବ ଆସି ଚାରିଆଡ଼ୁ ଘେରିପକାଏ । ଶୁଦ୍ଧ, ସାତ୍ତ୍ୱିକ ଭାବ ସଂସାରଚିନ୍ତା ହାରାହାନ୍ତ ମନକୁ ଉଚ୍ଛ୍ୱାସ କରିଦିଏ । ଏହା ହିଁ ତୀର୍ଥସ୍ଥାନର ମାହାତ୍ମ୍ୟ ଏବଂ ବିଶେଷତ୍ୱ ।

ଗଡ଼ରୁ ସାତ ମାଇଲ ଦୂରରେ ବାଗରା [1] ଜଳପ୍ରପାତ । ସେଠାରେ ବାଗରା ନାମରେ ବନ୍ୟ ଜାତିର ଗୋଟିଏ ଗ୍ରାମ ଅଛି । ଗ୍ରାମପାଖରେ ନିରନ୍ଧ୍ର ଅରଣ୍ୟ,

ଘେଣେ ଦେବତମାଳା । ସେଠାରେ ବ୍ୟାଘ୍ର ଉପଦ୍ରବ ସୁଲଭ । ସୁତରାଂ ତାର ବାଘରା ନାମ ସାର୍ଥକ ହୋଇଅଛି । ଗ୍ରାମର ନାମକରଣ ଅନୁସାରେ ପ୍ରପାତର ନାମ ହୋଇଅଛି, କି ପ୍ରପାତର ନାମାନୁସାରେ ଗ୍ରାମର ନାମକରଣ ହୋଇଅଛି, ସ୍ଥାନୀୟ ଲୋକେ ତାହା କହିପାରନ୍ତି ନାହିଁ । ବୋଧ ହୁଏ ଗ୍ରାମଟି ପ୍ରପାତଠାରୁ ନାମ ଧାର କରିଅଛି । ପ୍ରପାତ କେଉଁ ଯୁଗର ପୁରାତନ, ତାହା ତୁଳନାରେ ବାଘରା ଗ୍ରାମ ସଦ୍ୟଜାତ ଅନାଭିଜ୍ଞ ଶିଶୁ । ପ୍ରପାତ ଏହାପରି କେତେ ଗ୍ରାମର ଉତ୍ଥାନ ପତନ, ଜନ୍ମ ବିଲୟ ଦେଖିଥିବ । ଏ ଅଞ୍ଚଳରେ ପ୍ରପାତକୁ "ଡୁଡୁମା" କହନ୍ତି । ବୋଧହୁଏ ଏହା ବନ୍ୟଜାତିର ଭାଷା । ସେଠାକୁ ଯିବାକୁ ହେଲେ ଘାଟି ପଥରେ କିଛି ଦୂର ଯାଇ ସେଠାରୁ ବାଟ ଭାଙ୍ଗି ଯିବାକୁ ହୁଏ । ପ୍ରପାତ ପର୍ଯ୍ୟନ୍ତ ଗାଡ଼ି, ମୋଟର ପ୍ରଭୃତି ଯାନ ଯାଇପାରେ । ପ୍ରାୟ ୩୦୦ ହାତ ଓହ୍ଲା ଯିବାକୁ ହୁଏ । କେତେକ ପଥ ଅତି ଗଡ଼ାଣିଆ ଏବଂ ପିଚ୍ଛିଳ ଖଣ୍ଡୋପଳ ପୂର୍ଣ୍ଣ । ଓହ୍ଲାଇବା ବେଳେ ଗୋଡ଼ ଚଟ୍ ଚଟ୍ ହୋଇଯାଏ । ଦୁର୍ବଳ ଲୋକ ସେ ପଥରେ ଓହ୍ଲାଇ ପାରେ ନାହିଁ । ଗ୍ରାମବାସୀମାନଙ୍କୁ ସାମାନ୍ୟ କିଛି ପାରିଶ୍ରମିକ ଦେଲେ ସେମାନେ ଡୋଲା କରି ନେଇଯାଆନ୍ତି । ଦୁଇଜଣ ଲୋକ ଶିକାରେ ବସାଇ ଟଙ୍ଗୀ କରି ମଧ୍ୟ ନେଇପାରନ୍ତି । ପ୍ରପାତ ଯାତ୍ରାପଥରେ ଦୁଇପାର୍ଶ୍ୱର ଶୋଭା ଅତ୍ୟନ୍ତ ଲୋଭନୀୟ । ବନଦେବୀଙ୍କ ଅଧରରୁ ହାସ୍ୟ ଝରିଲା ପ୍ରାୟ କୁନ୍ଦ ଫୁଲ ରାଶି ଝଡ଼ି-ପଡ଼ୁଥାଏ । କୁନ୍ଦ ସଭ୍ୟ ସମାଜରୁ ଆସି ଏଠାରେ ଅସଭ୍ୟ ସମାଜରେ ମିଶି ରହିଅଛି । ନଗର ଛାଡ଼ି ବନକୁ ସେ ନିଜର ଆବାସ କରିନେଇଅଛି । ସଭ୍ୟ ଅସଭ୍ୟର ଏ ଦୁର୍ଲ୍ଲଭ ମିଳନ ବଡ଼ ଅଦ୍ଭୁତ ଦୃଶ୍ୟ । କେହି କାହାକୁ ଘୃଣା କରିବାକୁ ନାହିଁ, ଅଧିକନ୍ତୁ ପରସ୍ପର ସମତାବଦ୍ଧ । ବୋଧହୁଏ କୁନ୍ଦସୁନ୍ଦରୀ ନାଗରିକ ସଭ୍ୟତାର "କୁନ୍ଦଦନ୍ତୀ" ଉପମା ସହି ନ ପାରି ପୁଣି ଆଦିମ ଅବସ୍ଥାକୁ ଫେରି ଆସିଅଛି । କବିମାନେ ତାକୁ ଦନ୍ତ ସଙ୍ଗରେ ଉପମା ଯୋଖି ତାହାର ନିର୍ମଳତା ଏବଂ ପବିତ୍ରତା ହ୍ରାସ କରିବାକୁ ବସିବାରୁ ସେ ଅତିଷ୍ଠା ହେବା ଭୟରେ ପଳାଇଆସି ବନରେ ଲୁଚିଅଛି ପରା ! ଏ ଅଞ୍ଚଳରେ ହୁଙ୍ଗା କୁହୁମ ଏବଂ ଧାତୁକାବଣ ବିଶେଷ ଦେଖାଯାଏ । ଘାଟି ଉପରୁ ନିମ୍ନସ୍ଥ କ୍ଷୁଦ୍ର ଜଳାଧାର ବନଦେବୀଙ୍କର ଉଜ୍ଜ୍ୱଳ ଚକ୍ଷୁ କିମ୍ବା ତ୍ରିବର୍ଣ୍ଣୀଙ୍କର ଫର୍ମୀବନ୍ଧା ଦର୍ପଣ ପରି ଅତି ମନୋରମ ଦିଶେ ।

"ଝୋଲାବ" ନଦୀ ଗର୍ଭରେ ବାଘର ଜଳପ୍ରପାତ । ଦୁଇ ପାଖରେ ପର୍ବତ ଅଜଗର ଶୋଇଲା ପରି ଲମ୍ବମାନ ମଧ୍ୟରେ ପ୍ରସ୍ତର ଶଯ୍ୟାରେ ନଦୀ ବହି-ଯାଉଅଛି । ଗତି ପଥରେ ବୃହତ୍ ଶିଳା ଅତିକ୍ରମ କରି ତଳକୁ ଗଡ଼ି ଆସିବା-ବେଳେ ସ୍ରୋତ କଳ କଳ ନାଦରେ ହୁଳହୁଳୀ ଦେଇ ଚାଲିଅଛି । କେଉଁଠାରେ ବହୁ ପ୍ରସ୍ତର ଖଣ୍ଡରେ ସ୍ରୋତ ପ୍ରତିହତ ହୋଇ ବହୁ ତ୍ରିବେଣୀ ଏବଂ ପଞ୍ଚନଦର ସୃଷ୍ଟି କରୁଅଛି । କେଉଁଠାରେ ବା ପ୍ରସ୍ତର ଛିଦ୍ରରେ ଗଳିଆସି ଐରାବତ ଦନ୍ତାଘାତରେ ଗଙ୍ଗାବତରଣର ଦୃଶ୍ୟ ଅନୁକରଣ କରୁଅଛି । ସ୍ରୋତ ଜଳଲତା ସୃଷ୍ଟି କରି ଚାଲିଅଛି । ଫେନପୁଞ୍ଜ ସେହି ଲତାରେ ଫୁଲ ଫୁଟିଲା ଭଳି ସୁନ୍ଦର ଦିଶୁଅଛି । ନଦୀ ଯେଉଁ ଅମର କବିତା ଗାଇ ଗାଇ ଚାଲିଅଛି, ଏହି ଜଳଲତାମାନ ସେହି କବିତାର ଜଟିଳ କୁଟିଳ ଛନ୍ଦ ଏବଂ ଫେନପୁଷ୍ପ ତାହାର ମୂର୍ଚ୍ଛନା । କେଉଁଠାରେ ଗଙ୍ଗା ପାତାଳ ଗାମିନୀ ହେଲା ପରି ପର୍ବତରେ ଯାକ ହୋଇ ସ୍ରୋତ କେଉଁଆଡେ ଗଳିଯାଇଅଛି, କିଛି ଜାଣିହେଉ ନାହିଁ । ଗଣ୍ଡକୀନଦୀରେ ଶାଳଗ୍ରାମ ଗଡ଼ିଲା ପରି ସ୍ଥାନେ ସ୍ଥାନେ ସ୍ରୋତ ବେଗରେ ଅସଂଖ୍ୟ ଚିକ୍କଣ ପ୍ରସ୍ତରଗୋଲକ ଗଡ଼ ଗଡ଼ ଖେଳୁଅଛନ୍ତି । ସ୍ରୋତ ବହୁଶାଖା ପ୍ରଶାଖା ବିସ୍ତାର କରି ଧାଉଁଅଛି, ମନୁଷ୍ୟର ଆଶାସ୍ୱପ୍ନ ଶାଖା ପ୍ରଶାଖାରେ ଛିନ୍ନହୋଇ ଆଗକୁ ଧାଉଁ-ଥାଏ, ପଛକୁ ଫେରିବା ତାହାର ସ୍ୱଭାବବିରୁଦ୍ଧ । ସ୍ରୋତମଧ୍ୟସ୍ଥ ବିଶାଳ ବିସ୍ତୃତ ଶିଳାଖଣ୍ଡ ବନଲକ୍ଷ୍ମୀଙ୍କର ଗ୍ରୀଷ୍ମକାଳୀନ ଜଳଯନ୍ତ୍ରପୁରର ପାଷାଣମେଳ ପ୍ରାୟ ବିରାଜିତ. ଏକସ୍ଥାନରେ ସ୍ରୋତ ବିଶାଳ ଶିଳା ଡେଇଁ ସ୍ତମ୍ଭାକାରରେ ବହୁ ହସ୍ତ ନିମ୍ନରେ କଚଡ଼ହୋଇ ପଡ଼ୁଅଛି ଏବଂ ଭୀଷଣ ଶବ୍ଦରେ ବନଭୂମି ବିକମ୍ପିତ କରୁଅଛି । ପତନ ସ୍ଥାନରେ ଖଇଫୁଟିଲା ପ୍ରାୟ ରାଶି ରାଶି ଫେନ ଛିଡ଼ିକି ପଡ଼ୁ-ଅଛି, ଏହାହିଁ ବାଘର ପ୍ରପାତ ନାମରେ ଖ୍ୟାତ । ପ୍ରପାତର ଦୃଶ୍ୟ ବଡ଼ ମନୋହର । ଭୀଷଣତା ତାହାର ଶୋଭାର ଉପାଦାନ ହୋଇଅଛି । ଦୁଇପାଖର ଅରଣ୍ୟ ପ୍ରପାତକୁ ଭୟରେ କମ୍ପା ଭକ୍ତିରେ ପୁଷ୍ପାଞ୍ଜଳି ଦେଉଅଛନ୍ତି, ତାହା ସେହି ଏକା ଜାଣନ୍ତି । ମନୁଷ୍ୟର କଳ୍ପନା ସେଠାରେ ମୂକ । ପ୍ରପାତ ସମୀପସ୍ଥ ପ୍ରାକୃତିକ ଦୃଶ୍ୟ ଅତି ବିଚିତ୍ର । କେଉଁଠାରେ ମୁଚକୁନ୍ଦ ମୂରକି ମୂରକି ହସୁଅଛି । କେଉଁଠାରେ ନବପଲ୍ଲବିତ ବଣଜାମୁ ପାଟଲୁଗା ଘୋଡ଼ି ହୋଇ କ୍ଲାନ୍ତ ପଥିକ ପରି ପ୍ରସ୍ତର ଉପରେ ଅଙ୍ଗ ଢାଳିଦେଇ ବିଶ୍ରାମ କରୁଅଛି । ଦୋଦୁଲ୍ୟକଣ୍ଠଧାରୀ କୃଷ୍ଣଚୂଡ଼ା କୃଷ୍ଣପ୍ରେମରେ ବିଭୋର ହୋଇ ଝୁଲୁଅଛି । ଶରଗୁଳ୍ମ ଶୁକ୍ଳପତାକା

ଧରି ଦୋହଲଉଅଛି । ଏହାର ଅପର ନାମ ଗିରିଶୃଙ୍ଗ । ସାଧାରଣତଃ ଏହା
“ଫୁଲଝୁଣ୍ଟୀ” ନାମରେ ପରିଚିତ । ଗିରିଚୂଡ଼ା ଛଳେ ଶୁକ୍ଲମେଘ ଲାଗିରହି
ପର୍ବତର ଚନ୍ଦନପାଟି ପ୍ରାୟ ସୁନ୍ଦର ଦିଶୁଅଛି । ଏଠାରେ ସଲପ ଏବଂ ଚନ୍ଦନ
ଗଛ ସ୍ଥାନେ ସ୍ଥାନେ ଦେଖାଯାଏ । ଅମ୍ବ ଗଛମାନ ଚୈତ୍ରମାସରେ ବଉଳେ,
ଆଷାଢ଼ ମାସରେ ଆମ୍ବ ପାଚେ । ସ୍ଥୂଳ ପ୍ରକାଣ୍ଡ ବୃକ୍ଷ ସଙ୍ଗରେ ଆମ୍ବଫଳର
ତୁଳନା କଲେ ହିମାଳୟ ମୂଷିକ ପ୍ରସବ କଲାପ୍ରାୟ ବୋଧ ହୁଏ । ପଲ୍ଲବପାଟଳ
ଶାଳଗଛମାନ ବଉଳ ଭାରରେ ଝୁଙ୍କିପଡ଼ି ନମ୍ରସ୍ୱଭାବ ସଜ୍ଜନ ପରି ଦିଶୁଅଛନ୍ତି ।
ଘନପଲ୍ଲବ ଭିତରେ ଶାଳ ବଉଳ ତ୍ରିଶୂଳାରୂଢ଼ଙ୍କ ପଦ୍ମଗତ ପାର୍ଶ୍ୱରେ ସ୍ୱର୍ଣ୍ଣ ମୁକୁଟ
ଥୁଆ ହେଲା ପରି ଦିଶେ । ସନ୍ଧ୍ୟା ସମୟରେ ପର୍ବତରେ ଦାବାନଳର ଦୃଶ୍ୟ
ବାସ୍ତବରେ ଦୁର୍ଲ୍ଲଭ । ସତେ ଯେପରି ଗିରିରାଣୀ ସୁବର୍ଣ୍ଣ ହୀରାରେ ମଣ୍ଡିତ
ହୋଇଅଛନ୍ତି । ଅଥବା ରୂପେଶ୍ୱରୀ ବିଜୁଳି ବଜ୍ରର ଅଜସ୍ର କର୍ଣ୍ଣଦାହୀ ଶବ୍ଦରେ
ବ୍ୟତିବ୍ୟସ୍ତ ହୋଇ ନିର୍ଜନରେ ଆସି ସୁଖନିଦ୍ରା ଉପଭୋଗ କରୁଅଛି ।

ଜୟପୁର ଏବଂ ମାଡଗୋଲରାଜ୍ୟର ସୀମା ସ୍ଥଳରେ ରାମଗିରି ଥାନା
ଇଲାକାରେ ଆଉ ଗୋଟିଏ ପ୍ରକାଣ୍ଡ ଜଳପ୍ରପାତ ଅଛି । ପାର୍ବତ୍ୟ ପ୍ରକୃତି
ମାଚ୍ଛେରୁ ବା ମହାନଦୀ ଗର୍ଭରେ ସେହି ଜଳପ୍ରପାତ ସୃଷ୍ଟି କରିଅଛି । ତାହାର
ନାମ ବାଘଗଡ଼ ପ୍ରପାତ, ଅପରନାମ ବଡ଼ଡୁଡୁମା ବା ବଡ଼ଜଳପ୍ରପାତ । ବୋଧ
ହୁଏ ଦୁଡୁମ ଦୁଡୁମ ଶବ୍ଦରେ ଜଳ ପଡ଼ିବାରୁ ପ୍ରପାତର ନାମ ଡୁଡୁମା
ହୋଇଥିବ । ତାହା ଭାରତବର୍ଷର କାହିଁକି, ପୃଥିବୀର ଦ୍ୱିତୀୟ ଜଳପ୍ରପାତ ।
ପ୍ରାୟ ଦୁଇଶ ହାତ ଊର୍ଦ୍ଧ୍ୱରୁ ଜଳସ୍ତମ୍ଭ ଖସିପଡ଼ି କ୍ଷୁଦ୍ଧ ମହାବଳ ବ୍ୟାଘ୍ରପରି
ଅନବରତ ଭୀଷଣ ଗର୍ଜନ କରୁଅଛି । ସେହି ରୁଦ୍ରଗର୍ଜନରେ ବନ ପର୍ବତ
ଅନର୍ଗଳ ପ୍ରକମ୍ପିତ ହେଉଅଛି । ଏହି ମହାପ୍ରପାତ ଦୃଷ୍ଟିରେଖାରୋଧୀ ଗଭୀର
ଅରଣ୍ୟ ଗର୍ଭରେ ଅବସ୍ଥିତ । ସେଠାକୁ ଯିବା ନିରାପଦ ନୁହେଁ । ସେ ଅଞ୍ଚଳରେ
ମହୁମାଛିର ପ୍ରବଳ ଉପଦ୍ରବ । ବିଶେଷତଃ କାର୍ତ୍ତିକମାସରେ ସେଠାକୁ ଗଲେ
ମଧୁମକ୍ଷିକାର ଆକ୍ରମଣରୁ ନିସ୍ତାର ପାଇବା ଅସମ୍ଭବ ହୋଇ ଉଠେ । ପ୍ରପାତର
ଗର୍ଜନ ବହୁଦୂରଯାଏ ଶ୍ରୁତିଗୋଚର ହୁଏ । ଦୃପ୍ତ ଦାନବର ଗର୍ଜନ ପ୍ରାୟ ସେ
ଶବ୍ଦ ବଡ଼ ଭୟାନକ । ତାହା ଶୁଣି ଅତି ଦୁଃସାହସୀ ହୃଦୟରେ ସୁଦ୍ଧା ଭୟ
ଜାତ ହୁଏ । ପ୍ରକୃତିର ଏଡ଼େ ଗୋଟାଏ ମହାଶକ୍ତି ସେଠାରେ ବନରେ ମିଳାଇ
ଯାଉଅଛି । କୌଣସି ଉନ୍ନତ ବୈଜ୍ଞାନିକ ଦେଶରେ ଏପରି ଗୋଟାଏ ବିରାଟ

ଜଳପ୍ରପାତ ଥିଲେ, ତାହାର ଶକ୍ତିକୁ ଧରି କେତେ ବୃହତ୍ କଳକାରଖାନା ଚାଳିତ ହୋଇଥାଆନ୍ତା ଏବଂ କେତେ ଅସାଧ୍ୟ କାର୍ଯ୍ୟ ସୁସାଧ୍ୟ ହୋଇଥାଆନ୍ତା, ଧନାଗମର କେତେ ପଥ ଯେ ଉଦ୍ଭାବିତ ହୋଇଥାଆନ୍ତା, ତାହା କଳନା କରିହୁଅନ୍ତା ନାହିଁ । କେବଳ ସେହି ଶକ୍ତି ସହସ୍ର ସହସ୍ର ଲୋକର ସଂସାରଯାତ୍ରାର ପଥ ସରଳ କରିଦେଇଥାଆନ୍ତା । ସେ ଶକ୍ତି ତୁଳନାରେ କୋଟି ମାନବଶକ୍ତି ପିମ୍ପୁଡ଼ିଠାରୁ ଊଣା । ସେ ଶକ୍ତିକୁ ଦେଖିଲେ ଦର୍ପୀର ଦର୍ପ ଏବଂ କ୍ଷମତା କେଉଁଆଡ଼େ ମିଳାଇଯାଏ । ମନୁଷ୍ୟର ଶକ୍ତି ଯେ କେତେ କ୍ଷୁଦ୍ର ସୀମାରେ ଆବଦ୍ଧ, ତାହା ସ୍ୱତଃ ଅନୁଭୂତ ହୁଏ । ବଡ଼ ପ୍ରପାତର ଶକ୍ତି ଏକା ଜୟପୁର ଶକ୍ତି ନୁହେଁ, ସମଗ୍ର ଉତ୍କଳ ସେହି ଶକ୍ତିରେ ଦେବ-ଗୌରବ ଅନୁଭବ କରିବ । ଆଶା ହୁଏ, ମହାରାଜ ବିକ୍ରମଦେବ ବର୍ମାଙ୍କ ରାଜତ୍ୱ ସମୟରେ ଏ ମହାଶକ୍ତି କଦାଚ ବ୍ୟର୍ଥ ହେବ ନାହିଁ । ସେ ଏହାକୁ ଉପଯୁକ୍ତ କାର୍ଯ୍ୟରେ ଲଗାଇ ରାଜ୍ୟର ଉନ୍ନତି ସଙ୍ଗେ ସଙ୍ଗେ ନିଜର କୀର୍ତ୍ତି ଚିରସ୍ମରଣୀୟ ରଖିବେ । ଦୃଢ଼ବିଶ୍ୱାସ ଏତେ ଗୋଟାଏ ମହାପୂର୍ଣ୍ଣ ଶକ୍ତି ପ୍ରଚଳନରେ କଦାଚ ବନମାଳର ଚିର ବଳୟ ଭଳିବ ନାହିଁ । ଦିନେ ଏହି ମହାପ୍ରପାତ ଆଫ୍ରିକାସ୍ଥ ଜାମ୍ବେଜୀ ନଦୀର ଭିକ୍ଟୋରିଆ ପ୍ରପାତ କମ୍ବା ଆମେରିକାର ନାଏଗ୍ରା ପ୍ରପାତର ଗୌରବମୟ ସୌଭାଗ୍ୟ ଲାଭ କରିବ, ଏଥିରେ ସନ୍ଦେହର ଅବକାଶ ନାହିଁ । ସେତେବେଳେ ପୃଥିବୀର ଆଶ୍ଚର୍ଯ୍ୟ ଦୃଶ୍ୟର ଖ୍ୟାତି-ମୟ ତାଲିକାରେ ଏହାର ନାମ ସମୁଜ୍ଜ୍ୱଳ-ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ପ୍ରପାତ ସମ୍ବନ୍ଧରେ ଏତିକି କହିଲେ ଯଥେଷ୍ଟ ହେବ ଯେ, ସହସ୍ର ମତ୍ତ-ହସ୍ତୀର ଶକ୍ତି ତାହା ତୁଳନାରେ ତୁଚ୍ଛ ଏବଂ ନଗଣ୍ୟ । ବିକ୍ରମର ଏହି ଏକଛତ୍ର ରାଜତ୍ୱ ଯୁଗରେ ଜୟପୁର ପ୍ରପାତ ବୈଜ୍ଞାନିକମାନଙ୍କର ଲୀଳାକ୍ଷେତ୍ର ହେବ ଏବଂ ଏହି ପ୍ରପାତ କେତେ ଜଣଙ୍କୁ କୋଟିପତି କୁବେର କରିଦେବ ।

ବାଘରା ପ୍ରପାତକୁ ଯିବା ପଥର ବାମପାର୍ଶ୍ୱରେ ନୂଆବନ୍ଧ ଚୋଟା ନାମରେ ଗୋଟାଏ ବୃହତ୍ ଆମ୍ରୋଦ୍ୟାନ ଅଛି । ମହାରାଜ ବିକ୍ରମଦେବ ବର୍ମା ଉକ୍ତ ବଗିଚାରେ ହାଟ ବସାଇଅଛନ୍ତି । ତଦ୍ୱାରା ନଗରବାସୀ ଏବଂ ମଫସଲବାସୀ-ମାନଙ୍କର ବିଶେଷ ସୁବିଧା ହୋଇଅଛି । ହାଟଟି କୃଷି, ଶିଳ୍ପ, ବାଣିଜ୍ୟର ଗୋଟିଏ ସାମୟିକ କ୍ଷୁଦ୍ର ପ୍ରଦର୍ଶନୀ । ଅନ୍ତର୍ବାଣିଜ୍ୟୋନ୍ନତିର ତାହା ଗୋଟିଏ କଲ୍ୟାଣପ୍ରଦ ଅନୁଷ୍ଠାନ । ଯେଉଁଠାରେ ଯାହା ଅଭାବ; ତାହା ପୂରଣ କରିବା ବିଷୟରେ ମହାରାଜାଙ୍କର ତତ୍ପରତା ଏଥିରୁ ସ୍ପଷ୍ଟ ସୂଚିତ ହେଉଅଛି । ରାଜ୍ୟର

ନବାଗତଙ୍କ ଉନ୍ନତି ପ୍ରତି ତାଙ୍କର ଲକ୍ଷ୍ୟ ସ୍ୱଭାବିକ । ଏହି ତୋରଣ ମଧ୍ୟରେ ବିସ୍ତୃତ ଦରବାର ମଣ୍ଡପ 3 ଅବସ୍ଥିତ । ସେଠାରେ ଲୋକଯାଉଥିବା ପ୍ରଭୃତି ବିଶିଷ୍ଟ ଆଗନ୍ତୁକମାନଙ୍କୁ ଅଭ୍ୟର୍ଥନା କରାଯାଏ । ବିକ୍ରମଦେବ ବର୍ମା ରାଜା ହୋଇ ଜୟପୁରକୁ ବିଜେ ହେବାବେଳେ ଏହିଠାରେ ଅଭ୍ୟର୍ଥିତ ହୋଇଥିଲେ । ପ୍ରଜା-ବର୍ଗ ଏବଂ ରାଜକର୍ମଚାରୀମାନେ ତାଙ୍କୁ ଏହି ମଣ୍ଡପରେ ଅତୀବ ଆଗ୍ରହ ସହ ମହା ଆଡ଼ମ୍ବରରେ ଅଭିନନ୍ଦନ ପ୍ରଦାନ କରି ପାଛୋଟି ନେଇଥିଲେ । ମଣ୍ଡପ ନୀରବରେ ସେହି ଦିବସ ସ୍ମୃତି ଘୋଷଣା କରୁଅଛି । ଜୟପୁର ରାଜ୍ୟରେ ଆମ୍ବ, ପଣସ ପ୍ରଭୃତି ଫଳବୃକ୍ଷର ସୁବିସ୍ତୀର୍ଣ୍ଣ ଉଦ୍ୟାନ ବହୁତ ଦେଖାଯାଏ । ସାଧାରଣତଃ ଏତେ ଅଧିକ ସଂଖ୍ୟକ ଉଦ୍ୟାନ ଅନ୍ୟତ୍ର ଦେଖାଯାଏ ନାହିଁ । ଉଦ୍ୟାନର ବହୁଳତା ଦୃଷ୍ଟିରେ ଜୟପୁରକୁ ସମଗ୍ର ଉତ୍କଳମଣ୍ଡଳର "ମଧୁବନ" କହିଲେ ଅତିରଞ୍ଜିତ ହେବ ନାହିଁ । ଉଦ୍ୟାନ ପରି ହାଟ ମଧ୍ୟ ପ୍ରଚୁର ପରିଲକ୍ଷିତ ହୁଏ । ପ୍ରତ୍ୟେକ ହାଟକୁ ବନଜାତ ପଦାର୍ଥ ବିଶେଷ ପରିମାଣରେ ବିକ୍ରୟ ସକାଶେ ଆସେ । ଜନା, ମାଣ୍ଡିଆ ପ୍ରଭୃତି ଖାଦ୍ୟ ଶସ୍ୟର ସ୍ତୂପ ଦେଖିଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ । କୁରାଡ଼ି, କାତି, ନାନା ଧରଣର ଠାଙ୍ଗିଆ ପ୍ରଭୃତିର ସଂଖ୍ୟା କରିବା ଦୁରୂହ । ଅନ୍ୟାନ୍ୟ ସ୍ଥାନ ତୁଳନାରେ ତାହା ସବୁ ଖୁବ୍ ଶସ୍ତାରେ କିଣିବାକୁ ମିଳେ । ପ୍ରାୟ ପ୍ରତିବାରରେ ହାଟ ହୁଏ । ତିଥିଶୂନ୍ୟ ବାର ଥାଇପାରେ, ମାତ୍ର ଜୟପୁର ରାଜ୍ୟରେ ହାଟଶୂନ୍ୟବାର 4 ପ୍ରାୟ ନାହିଁ କହିଲେ ଅସଙ୍ଗତ ହେବ ନାହିଁ ।

ଜୟପୁରର ପ୍ରାଚୀନ ରାଜଧାନୀ ନନ୍ଦପୁର 5 । ଜୟପୁର ରାଜଧାନୀଠାରୁ ତାହାର ଦୂରତା ୪୨ ମାଇଲ । ସେଠାରେ ବତ୍ରିଶପାବଚ୍ଛବିଶିଷ୍ଟ ପ୍ରସ୍ତର ସିଂହାସନ ଅଛି । ପୂର୍ବେ ରାଜାମାନେ ସେହି ସିଂହାସନରେ ବସି ରାଜ୍ୟାଭିଷିକ୍ତ ହେଉଥିଲେ । ସିଂହାସନ ତଳେ ଶାଳଗ୍ରାମ ଅଛନ୍ତି । ଯେଉଁ ଶାଳଗ୍ରାମ ଦେବତା ରୂପେ ପୂଜିତ ହୁଅନ୍ତି, ସେହି ଦେବତାଙ୍କ ଉପରେ ପାଦ ସ୍ଥାପନ କରିବା ଅଧର୍ମ ଭାବି ବର୍ତ୍ତମାନ ମହାରାଜାଙ୍କ ପ୍ରପିତାମହ ମହାରାଜ ରାମଚନ୍ଦ୍ର ଦେବ ଉକ୍ତ ଅକଲ୍ୟାଣ ପ୍ରଥା ଉଠାଇ ଦେଇଅଛନ୍ତି । ସେଠାରେ ଆଉ ଅଭିଷେକୋତ୍ସବ ହେଉ ନାହିଁ । ବର୍ତ୍ତମାନ ସୁଦ୍ଧା ନନ୍ଦପୁରରେ ଶ୍ରାବଣେ ରାଜକାର୍ଯ୍ୟ ଧାରାରେ ପ୍ରତି-ପାଳିତ ହୁଏ । ନନ୍ଦପୁରସ୍ଥ ପର୍ବତର ନାମ—କୋଟନି ମାଳ । ସେହି ପର୍ବତରେ ଖାଲ ଜମି ଅଛି । ସେଥିରେ ଯେଉଁ ଧାନ ହୁଏ, ତାହାର ରାଜପରିବାରର ନୂଆ ଖିଆ ହୁଏ । ଅଦ୍ୟାବଧି ସେହି ରୀତି ଚଳିଆସୁଅଛି । ଜୟପୁରର ଜନେ-

ରାଜା ନନ୍ଦପୁରସ୍ଥ କନକଦୁର୍ଗାଙ୍କ ପ୍ରସାଦ ବ୍ୟତୀତ ଅନ୍ୟ କିଛୁ ଆହାର କରୁ ନ ଥିଲେ । ସେଠାରୁ ଦେବୀଙ୍କର ପ୍ରସାଦ ପ୍ରତ୍ୟହ ଆସିଲେ ରାଜାଙ୍କର ଯୋଗାଣ ପଡ଼େ । ଥରେ ଝଡ଼ ବର୍ଷାର ଦୁର୍ଯୋଗରେ ପଥ ଘାଟ ବନ୍ଦ ହୋଇ ଯିବାରୁ କେତେ ଦିନଯାଏ ପ୍ରସାଦ ଆସିପାରିଲା ନାହିଁ । ରାଜା ନିରମ୍ବୁ ଉପବାସ ରହିଲେ । ଦିନେ ଦେବୀ ସ୍ୱପ୍ନରେ ରାଜାଙ୍କୁ ଆଦେଶ କଲେ ଆଉ ଏତେ କଷ୍ଟ ସହିବାର ଆବଶ୍ୟକତା ନାହିଁ, ମୋର ମୂର୍ତ୍ତି ଜୟପୁର ଗଡ଼ରେ ସ୍ଥାପନ କର ମୁଁ ସେହିଠାରେ ତୁମ୍ଭର ଭକ୍ତିପୂଜା ଗ୍ରହଣ କରିବ । ତହୁଁ ରାଜା ଦେବୀଙ୍କ ଆଜ୍ଞା ଶିରୋଧାର୍ଯ୍ୟପୂର୍ବକ ସତ୍ୱର ପ୍ରତିପାଳନ କଲେ । ନନ୍ଦପୁରରେ ଏବେ ଗୋଟିଏ ଶିବଙ୍କର ମନ୍ଦିର ଅଛି । ରାଜବଂଶର ଆଦ୍ୟ ପୁରୁଷ ବିନାୟକ ଦେବ ପ୍ରଥମେ ସେହି ଦେଉଳରେ ଆସି ଆଶ୍ରୟ ନେଇଥିଲେ । ସେତେବେଳେ ନନ୍ଦପୁର ଶିଳା ବଂଶୀୟ ରାଜାଙ୍କର ରାଜଧାନୀ ଥିଲା । ବିସ୍ତୃତ ବିବରଣୀ ପରବର୍ତ୍ତୀ ପରିଚ୍ଛେଦର ରାଜବଂଶାବଳୀରେ ଲିଖିତ ହେବ । ନନ୍ଦପୁର ଅଞ୍ଚଳରେ ଜୈନ ଏବଂ ବୌଦ୍ଧ ମନ୍ଦିର ଓ ମୂର୍ତ୍ତି ଅନେକ ଅଛି । ବୋଧ ହୁଏ ସମୟରେ ସେ ଅଞ୍ଚଳ ଏହି ଦୁଇ ଧର୍ମର ଗୋଟାଏ ଉପକେନ୍ଦ୍ର ଥିଲା । ଇତିହାସର ଉପାଦାନ ନନ୍ଦପୁରରେ ମୂର୍ତ୍ତି ଧରି ରହିଅଛି । ସେଠାରେ "ଗଙ୍ଗେଇଶ୍ୱରୀ" ନଦୀ ପ୍ରବାହିତ ହୁଏ । ପାର୍ବତ୍ୟ ଜାତି ଉଲଗ୍ନ ବନ୍ଦାଚରିଜା ଏ ଅଞ୍ଚଳରେ ଅନେକ ଅଛନ୍ତି । ନନ୍ଦପୁରରେ ଉତ୍କୃଷ୍ଟ ଲେମ୍ବୁ ଯଥେଷ୍ଟ ମିଳେ । ପାଡ଼ୁଆ ଏବଂ ନାରାୟଣପୁର ପାଟଣାରେ ମଧ୍ୟ ଭଲ କମଳା ଲେମ୍ବୁ ଉତ୍ପନ୍ନ ହୁଏ । ନନ୍ଦପୁର ଶୋଭା ମନୋରମାପୂର୍ଣ୍ଣ ବାଞ୍ଛନୀୟ ଉପାସନା ତୀର୍ଥ ଏବଂ ରାଜଧାନୀର ଉପଯୁକ୍ତ ସ୍ଥାନ । ସେଠାରେ ଶତ୍ରୁ ଆକ୍ରମଣ ପ୍ରତିହତ କରିବାର ପ୍ରାକୃତିକ ପ୍ରତିବନ୍ଧକ ଯଥେଷ୍ଟ ଅଛି । ବଂଶର ଆଦ୍ୟ ପୁରୁଷ ବିନାୟକ ଦେବଙ୍କଠାରୁ ଛ' ପୁରୁଷ ପର୍ଯ୍ୟନ୍ତ ରାଜାମାନଙ୍କର ଗୋଟିଏ ଗୋଟିଏ ପୁତ୍ର ହେବାରୁ ସପ୍ତମ ରାଜା ବୀର ବିକ୍ରମଦେବ ସେଠାରୁ ଜୟପୁରକୁ ରାଜଧାନୀ ଉଠାଇଆଣିଥିଲେ । ବୀର ବିକ୍ରମଦେବ ୧୬୩୭ ରୁ ୧୬୬୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏହି ବୀର ବିକ୍ରମଦେବଙ୍କ ସମୟରେ ନନ୍ଦପୁରରୁ ଜୟପୁରକୁ ରାଜଧାନୀ ପରିବର୍ତ୍ତିତ ହୋଇଥିବାର ବିଶାଖପଟ୍ଟଣ ଜିଲା ଗେଜେଟିୟରରେ ଲିଖିତ ହୋଇଅଛି । ପ୍ରାଚୀନ ଲେଖା ରାଜବଂଶାବଳୀ ସଙ୍ଗରେ ମଧ୍ୟ ତାହା ଠିକ୍ ମିଳୁଅଛି । ମାତ୍ର ଐତିହାସିକ ରମଦାସ ପାନ୍ତୁଲୁଙ୍କ ମତରେ ଗେଜେଟିୟରରେ ବୀର ବିକ୍ରମଦେବଙ୍କର ଯେଉଁ ରାଜତ୍ୱ କାଳ ଉଲ୍ଲେଖ କରାଯାଇଅଛି, ତାହା ପ୍ରକୃତରେ ରାଜାଧିରାଜ କୃଷ୍ଣଦେବଙ୍କ ଅମଳ । ଏହି କୃଷ୍ଣଦେବଙ୍କ ଅମଳରେ

ଜୟପୁର ରାଜ୍ୟର ବିପୁଳ ବିସ୍ତୃତି ଘଟିବା ଯୋଗୁଁ ରାଜଧାନୀ ନନ୍ଦପୁରରୁ ଜୟପୁରକୁ ଘୁଞ୍ଚିଆସିଲା । କାରଣ ଜୟପୁର ରାଜଧାନୀ ରାଜ୍ୟର ପ୍ରାୟ କେନ୍ଦ୍ର-ସ୍ଥଳରେ ଅବସ୍ଥିତ । ଏ ମତ ତେତେ ପ୍ରାମାଣିକ ବୋଧ ହୁଏ ନାହିଁ । ରାଜଧାନୀ ରାଜ୍ୟର ଠିକ୍ କେନ୍ଦ୍ରସ୍ଥଳରେ ହେବ ବୋଲି କୌଣସି ଧରାବନ୍ଧା ନିୟମ ନାହିଁ । ସ୍ୱାସ୍ଥ୍ୟ ଶତ୍ରୁ ଆକ୍ରମଣ ପ୍ରଭୃତି ନାନା ଆଡ଼କୁ ଦୃଷ୍ଟି ଦେଇ ରାଜଧାନୀର ସ୍ଥାନ ନିର୍ବାଚନ କରିବାକୁ ହୁଏ । ସେହି ଦୃଷ୍ଟିରେ ନନ୍ଦପୁରଠାରୁ ଜୟପୁର ରାଜଧାନୀର ଅଧିକତର ଉପଯୁକ୍ତ । କୃଷ୍ଣ ଦେବ ବୀର ବିକ୍ରମଦେବଙ୍କ ପରବର୍ତ୍ତୀ ରାଜା । ସେ ୧୬୬୯ରୁ ୧୬୭୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜପଣ କରିଥିଲେ । କେଉଁ ପ୍ରମାଣ ବଳରେ ସେ ବୀର ବିକ୍ରମଙ୍କ ରାଜତ୍ୱକାଳକୁ କୃଷ୍ଣଦେବଙ୍କ ରାଜତ୍ୱକାଳ ବୋଲି ନିର୍ଦ୍ଦେଶ କରୁଅଛନ୍ତି, ତାହା ଅଜ୍ଞାତ ହେତୁ ସେ ସମ୍ବନ୍ଧରେ ଆଲୋଚନା କରିବାର ସୁବିଧା ହେଲା ନାହିଁ; ତଥାପି ତାହା ଐତିହାସିକମାନଙ୍କ ପ୍ରଣିଧାନର ଯୋଗ୍ୟ ହେବା ଉଚିତ । ଆଶା ହୁଏ, ତାହା ଶୀଘ୍ର ମୀମାଂସିତ ହୋଇଯିବ ।

ଆଉ ଗୋଟିଏ ପ୍ରଧାନ ଦ୍ରଷ୍ଟବ୍ୟ ଗୁପ୍ତେଶ୍ୱର ଗୁହା । ଏହା "କୋଲାବ" ନଦୀ ଧାରରେ ଅବସ୍ଥିତ । ଗୁହା ମୁଖର ଓସାର ନ ଫୁଟ ନ ଇଞ୍ଚ, ଉଚ୍ଚତା ଆଠ ଫୁଟ । ଗୁହାଟି ପ୍ରାୟ ବୃତ୍ତାକାର ଗୃହ ସ୍ୱରୂପ । ତାହାର ଉଚ୍ଚତା ୧୦ ଫୁଟ ଏବଂ ଦୀର୍ଘପ୍ରସ୍ଥ ପ୍ରାୟ ୪୦ ଫୁଟ । ଭିତରେ ଗୁପ୍ତେଶ୍ୱର ଶିବ ଅଧିଷ୍ଠିତ । ଏହା ଖୋଦିତ ମୂର୍ତ୍ତି ନୁହେଁ; ଲିଙ୍ଗାକାରରେ ସ୍ୱାଭାବିକ ପ୍ରସ୍ତରଖଣ୍ଡ । ଜୟପୁରର ରାଜା ବିକ୍ରମ-ଦେବଙ୍କ ରାଜତ୍ୱ କାଳରେ ଆବିଷ୍କୃତ । ପାଞ୍ଚଶ ଫୁଟ ଉଚ୍ଚ ପର୍ବତ ଉପରେ ଏହି ଗୁମ୍ଫା ଅବସ୍ଥିତ । ପର୍ବତ ତଳୁ ଗୁମ୍ଫା ପର୍ଯ୍ୟନ୍ତ ପାହାଚ ବନ୍ଧା ହୋଇଅଛି । ଏଠାରେ ରାମାୟଣବର୍ଣ୍ଣିତ ଅନେକ ଘଟଣା ଘଟିଥିବାର କିମ୍ବଦନ୍ତୀ ଅଛି । ଏଠାରେ ଅଦ୍ୟାବଧି ଶିବରାତ୍ରି ଯାତ୍ରା ମହାସମାରୋହରେ ହେଉଅଛି । ଗାଈ ଆକୃତିର ଖଣ୍ଡେ ପ୍ରସ୍ତରରୁ ଅନବରତ ଟୋପା ଟୋପା ହୋଇ ପାଣି ଝରୁଅଛି । ତାକୁ କାମଧେନୁ ଥଣରୁ କ୍ଷୀର ଗଡ଼ୁଅଛି ବୋଲି ଲୋକେ କହନ୍ତି ଏବଂ ଅତି ପବିତ୍ର ଜ୍ଞାନ କରି ଭକ୍ତିରେ ତାହା ପାନ କରନ୍ତି । ସ୍ଥାନଟି ଯୋଗୀ ଋଷିମାନଙ୍କର ଲୋଭନୀୟ । ବୋଧ ହୁଏ ଏହା ଯୋଗାଶ୍ରମ ଥିଲା । ସେହି ପବିତ୍ରତା, ସେହି ପୁଲକକୋଳା ଶାନ୍ତି ଅଦ୍ୟାପି ସେଠାରେ ବିଦ୍ୟମାନ ରହିଅଛି, ଏବଂ ତାହା ଦର୍ଶକଙ୍କ ଅନ୍ତରରେ ପ୍ରଭାବିତ କରୁଅଛି । ଏ ନିର୍ଜନ ସ୍ଥାନର ନିର୍ମଳ ପବିତ୍ର ବାୟୁ ନରପ୍ରାଣରେ ଶୁଦ୍ଧ ସାତ୍ତ୍ୱିକ ଭାବ ଉଦ୍ରେକ କରିଦିଏ । ମନୁଷ୍ୟ ଏଠାରେ

ବସିଲେ ସଂସାରକୁ ଏକାବେଳକେ ଭୁଲିଯାଏ । ଏ ସ୍ଥାନର ବନ୍ୟ ବିହଙ୍ଗମାନେ ସୁଦ୍ଧା ଋଷିପ୍ରକୃତିର । ମଧୁର କୂଜନ ଛଳରେ ସେମାନେ ଆଗନ୍ତୁକଙ୍କୁ ଅଭ୍ୟର୍ଥନା କରନ୍ତି । କୁଳୁ କୁଳୁ ଶବ୍ଦରେ ନଦୀ ସ୍ୱାଗତସମ୍ଭାଷଣ କରେ । ଚକ୍‌କଣ ପ୍ରସ୍ତର ଖଣ୍ଡ ସୁଖାସ୍ତରଣରୂପେ କ୍ଳାନ୍ତି ଅପନୋଦନ କରେ । ସେପରି ଶିବଙ୍କ ସଦ୍‌ଭାବରେ ସମସ୍ତେ ଶିବତ୍ୱ ପ୍ରାପ୍ତ ହୋଇଅଛନ୍ତି । ଶିବଙ୍କର ମହିମା ଦୂର ଦୂରାନ୍ତରେ ବିଘୋଷିତ ହୁଏ । ବିପଦ କାଳରେ ସମସ୍ତେ ତାଙ୍କର ଶରଣାପନ୍ନ ହୁଅନ୍ତି । ଶଙ୍କର ନିଜର ଦୁର୍ଲ୍ଲଭ ଦେବତ୍ୱରେ ଲୋକଙ୍କର ଭକ୍ତି ଏବଂ ବିଶ୍ୱାସ ଆକର୍ଷଣ କରନ୍ତି । ଶିବଙ୍କୁ ଆଶ୍ରୟ କରି ଅନେକ ଅସାଧ୍ୟ ରୋଗଗ୍ରସ୍ତ ବ୍ୟକ୍ତି ସମ୍ପୂର୍ଣ୍ଣ ରୋଗମୁକ୍ତ ହୋଇଥିବାର ଜନଶ୍ରୁତି ଅଛି । ଦେବତା ବିଶ୍ୱାସ କେହି କରୁ ବା ନ କରୁ; ମାତ୍ର ମନୁଷ୍ୟ ଦୃଢ଼ ବିଶ୍ୱାସ ଦେବତ୍ୱ ପ୍ରାପ୍ତ ହୋଇ ଅଭୀଷ୍ଟ ଫଳ ପ୍ରଦାନ କରେ, ଏହା ସ୍ୱତଃସିଦ୍ଧ ସତ୍ୟ । ଭକ୍ତପ୍ରବର ରାଜପୁତ୍ର ଶିଶୁ ଧ୍ରୁବର ଅଟଳ ବିଶ୍ୱାସ ତାଙ୍କୁ ହରି ରୂପରେ ଦେଖାଦେଇ ଚେତୁବର ପ୍ରଦାନ କରିଥିଲା । ସାଧକମଣି ପ୍ରହ୍ଲାଦର ଦୃଢ଼ ବିଶ୍ୱାସ ନରସିଂହ ରୂପରେ ସ୍ତମ୍ଭ ବିଦାରି ପିତୃ ଦୌରାତ୍ମ୍ୟରୁ ତାକୁ ଉଦ୍ଧାର କରିଥିଲା । ଏହା ଅପେକ୍ଷା ବିଶ୍ୱାସର ଶୁଭ ଦୃଷ୍ଟାନ୍ତ ଆଉ କଅଣ ହୋଇପାରେ ? ଏଠାରୁ ନ ମାଇଲ ଦୂରରେ 7 ରାମଗିରି ପର୍ବତ । ଏହାକୁ ପଣ୍ଡିତମାନେ କାଳିଦାସ ବିରଚିତ ପ୍ରସିଦ୍ଧ ମେଘଦୂତ କାବ୍ୟର ରାମଗିରି ବୋଲି ନିର୍ଦ୍ଦେଶ କରନ୍ତି । ଏହାର ପାଦଦେଶରେ ପ୍ରଚ୍ଛନ୍ନ ବେଗ ନଦୀ ପ୍ରବାହିତା । ଏହିଠାରୁ ହିଁ ନିର୍ବାସନ ଦଣ୍ଡପ୍ରାପ୍ତ ବିରହୀ ଯକ୍ଷ "ଆଷାଢ଼ସ୍ୟ ପ୍ରଥମଦିବସେ" ମେଘକୁ ଦୂତପଦରେ ବରଣ କରି ପ୍ରିୟା ନିକଟକୁ ଯକ୍ଷପୁରକୁ ପଠାଇଥିଲା ।

ଜୟପୁରର ଧର୍ମଶାଳା ଗୋଟିଏ କ୍ଷୁଦ୍ର ରାଜବାଟୀ ପରି ଦିଶେ । ସାଜସଜ୍ଜା ରାଜୋଚିତ । ଅତିଥିମାନଙ୍କ ସୁଖ ବିଶ୍ରାମର ଭଲ ବ୍ୟବସ୍ଥା ଅଛି । ସମ୍ମୁଖରେ ଫୁଲ ବଗିଚା । ଅଧିକାଂଶ ଗଛ ଗୋଲାପ । ଫୁଲଗୁଡ଼ିକ ଅଳିଅଳ ବାଳିକା ପରି ଗେଲ କୌତୁକରେ ପରସ୍ପର ଉପରେ ଢଳାଢଳି ମଧୁର ହାସ୍ୟରେ ଦିଗ ଉଜ୍ଜ୍ୱଳ କରି ବସିଅଛନ୍ତି । ବେଳେ ବେଳେ ସମୀରଣ ଆସି ସେବକ ପରି ସେମାନଙ୍କୁ ପୁଷ୍ପ ଦୋଳିରେ ଝୁଲାଇ ଦେଇ ଯାଉଅଛି । ବାଳିକାଗୁଡ଼ିକ ହସି ହସି ଅରି ଉଠୁଅଛନ୍ତି । ପାଖୁଡ଼ାଛଳରେ ସେ ହାସ୍ୟରୁ ସୌନ୍ଦର୍ଯ୍ୟ ଝରିପଡୁଅଛି । ସେହି ଫୁଲସୁନ୍ଦରୀଗୁଡ଼ିକ ଆଗନ୍ତୁକଙ୍କୁ ପ୍ରଥମେ ଅଭ୍ୟର୍ଥନା କରନ୍ତି । ପ୍ରଶ୍ୱାସ ସୌରଭର ବନ୍ୟା ଖେଳାଇଦେଇ ଆଗନ୍ତୁକର କ୍ଳାନ୍ତି, ବିଷାଦ ଧୋଇ ଦିଅନ୍ତି ।

ଏହି ଧର୍ମଶାଳା ପ୍ରତିଷ୍ଠାତା ମହାରାଜ ବିକ୍ରମଦେବ, କେ. ସି. ଆଇ. ଇ.ଙ୍କ ଅମଳରେ ନିର୍ମିତ। ମହାରାଜଙ୍କ ଗୃହଶିକ୍ଷକ ମହାମତି ମାର୍ସ ସାହେବଙ୍କ ସ୍ମୃତି-ରକ୍ଷା ଉଦ୍ଦେଶ୍ୟରେ ଏହା ସ୍ଥାପିତ ହୋଇଅଛି। ମହାରାଜ ତାଙ୍କୁ ଅତ୍ୟନ୍ତ ଭକ୍ତି ଓ ସମ୍ମାନ କରୁଥିଲେ। ଭୂତପୂର୍ବ ମାନ୍ଦ୍ରାଜ ଲାଟ ଲର୍ଡ଼ ପେଣ୍ଟଲଣ୍ଡ ଏହି ପାନ୍ଥନିବାସର ଦ୍ୱାରୋଦ୍‌ଘାଟନ କଲାବେଳେ ମହାରାଜ ସ୍ୱୀୟ ଶିକ୍ଷାଗୁରୁଙ୍କ ସମ୍ବନ୍ଧରେ କହିଥିଲେ — "ସେ ପିତା ପରି ମୋର ଯତ୍ନ ନେଉଥିଲେ। ସେ ବଡ ଜନପ୍ରିୟ ଥିଲେ। ଗୁରୁସାହେବ ନାମରେ ସେ ପ୍ରତ୍ୟେକ ଜୟପୁରବାସୀଙ୍କ ନିକଟରେ ପରିଚିତ ଥିଲେ। ତାଙ୍କ ମୃତ୍ୟୁରେ ମୁଁ ଅତି ମର୍ମାହତ ହୋଇପଡିଥିଲି। ମୋର ପିତାଙ୍କ ମୃତ୍ୟୁ ପରେ ଆଉ ଏତେ ବଡ କଷ୍ଟ ମୁଁ ଭୋଗ କରି ନ ଥିଲି। ଏହି ପାନ୍ଥନିବାସ ସ୍ଥାପନ କରିବାରେ ମୋର ଏହି ଉଦ୍ଦେଶ୍ୟ ନିହିତ ଅଛି ଯେ, ପ୍ରତ୍ୟେକ କ୍ଳାନ୍ତ ପଥିକ ଏଠାରେ ବିଶ୍ରାମ ନେଲାବେଳେ ତାଙ୍କୁ ମନେ ପକାଇବେ ଏବଂ ଆଶୀର୍ବାଦ କରିବେ।"

ମହାରାଜାଙ୍କର ଏହି ଉକ୍ତି ତାଙ୍କ ଅଗାଧ-ଗୁରୁଭକ୍ତିର ପରିଚାୟକ ଏବଂ ଆଦର୍ଶ ସ୍ଥାନୀୟ। ଶିଷ୍ୟ ହୃଦୟରୁ ଏରୂପ ଅନାବିଳ ଭକ୍ତି ଆକର୍ଷଣ କରିବା ଭଳି ସଦ୍‌ଗୁରୁ ସାଧାରଣରେ ଅତି ଅଳ୍ପ ଦେଖାଯାନ୍ତି। ମହାରାଜଙ୍କର ଏହି ବ୍ୟଥାଶ୍ରୁ-ତର୍ପଣକୁ ଗୁରୁଦେବ ତୀର୍ଥବାରି ତୁଲ୍ୟ ଆଗ୍ରହରେ ଗ୍ରହଣ କରିଥିବେ। ପର-ଲୋକରେ ତାହା ତାଙ୍କର ଦୁର୍ଲ୍ଲଭ ଆନନ୍ଦର କାରଣ ହୋଇଥିବ। ଉପଯୁକ୍ତ ଶିଷ୍ୟ ଉପଯୁକ୍ତ ଗୁରୁଙ୍କର ଉପଯୁକ୍ତ ସ୍ମୃତିରକ୍ଷା କରି ଧନ୍ୟ ହୋଇଅଛନ୍ତି। ଗୁରୁଶିଷ୍ୟର ପିତାପୁତ୍ର ସମ୍ବନ୍ଧ ଏହିପରି ଆନ୍ତରିକତାଦ୍ୱାରା ସାର୍ଥକ ହୁଏ। "ପିତାଙ୍କ ମୃତ୍ୟୁପରେ ଆଉ ଏତେ ବଡ କଷ୍ଟ ମୁଁ ଭୋଗ କରି ନ ଥିଲି।" ରାଜଶିଷ୍ୟଙ୍କର ଏହି କଥାପଦକ ଗୁରୁପ୍ରୀତିର ଚୂଡାନ୍ତ ସୀମା ସ୍ପର୍ଶ କରିଅଛି।

ଅଶାନ୍ତ ଆବାସ ପାୱାର ହାଉସ୍ କଳଘୁଣ୍ଡା ପରି ସବୁବେଳେ ମୁଖର। ଘର୍ ଘର୍, ଠକ୍ ଠକ୍, ଧୁସ୍ ଧୁସ୍ ଧ୍ୱନି କର୍ଣ୍ଣରେ କଳକ ବନ୍ଧ କରେ ସେଠାରେ ବିଜ୍ଞାନର ଲୀଳା, ଅଜ୍ଞାନ ପାଇଁ ଠାବ ନାହିଁ। ଯନ୍ତ୍ର ସାହାଯ୍ୟରେ ତଡିତ୍ ପ୍ରସ୍ତୁତ ହୋଇ ଗୃହଆଦିକୁ ବୈଦ୍ୟୁତିକ ହୁଏ। ତାରଦ୍ୱାରା ପ୍ରେରିତ ହୁଏ। ଆଲୋକ-ରାଣୀ ସୌଦାମିନୀ ମୁହୂର୍ତ୍ତକ ମଧ୍ୟରେ ପଥ, ଘାଟ, ଗୃହ, ପ୍ରାଙ୍ଗଣ ଆଲୋକମୟ କରିଦିଏ। ଶକ୍ତିପୁଞ୍ଜଟି ଚକମକି ପଥର କିମ୍ବା ମଶ୍ରୁରର ଉଦର ପରି ବାହାରେ ଶୀତଳ; ମାତ୍ର ଭିତରେ ଅଗ୍ନିଗର୍ଭ। ସେହି ଐନ୍ଦ୍ରଜାଳିକ ପୁଟରେ ଦେହବନ

ବିଦ୍ୟାବିଶାରଦ କେତେ ଜଣ କର୍ମଚାରୀ ଅଛନ୍ତି । ପ୍ରତ୍ୟେକର ଏକାଧିକ ସହକର୍ମୀ ଅଛନ୍ତି । ସେମାନଙ୍କ ମଧ୍ୟରୁ ଅଧିକାଂଶ ବିଦେଶୀ । ଗୋଦାବରୀ ଜିଲାବାସୀ ଜଣେ ମୁସଲମାନ କର୍ମଚାରୀର ଦକ୍ଷତା ଅତି ଚମତ୍କାର । ଓୟାର୍‌ଲେସ୍ ବା ବେତାର-ଯନ୍ତ୍ର ଏହିଠାରେ ଅଛି, ବର୍ତ୍ତମାନ ତାହା ଅଚଳ ।

ଜୟପୁରର ପ୍ରଧାନ ପର୍ବ ଦଶହରା; ତାହା ଅତି ସମାରୋହରେ ପାଳିତ ହୁଏ । ପର୍ବଟି ଦୁଇ ଭାଗରେ ବିଭକ୍ତ — ବଡ଼ ଉତ୍ସବ ଏବଂ ସାନ ଉତ୍ସବ । ଉତ୍ସବର ଅର୍ଥ ଉତ୍ସବ । ଉତ୍ସବର ଚତୁର୍ଦ୍ଦଶ ଦିନ ବଡ ଉତ୍ସବ ଏବଂ ଷୋଡ଼ଶ ଦିନ ସାନ ଉତ୍ସବ ଆଖ୍ୟାରେ ଅଭିହିତ ହୁଏ । କନକଦୁର୍ଗାଙ୍କର ପୂଜା ଦଶହରା ଷୋଳ ଦିନଯାଏ ଲାଗିଥାଏ । ପୂର୍ବେ ଦେବୀଙ୍କ ନିକଟରେ ନରବଳି ଦିଆଯାଉଥିଲା, ତାହାକୁ ମେରିଆ କହୁଥିଲେ । ଆଜି ପର୍ଯ୍ୟନ୍ତ ପଶୁବଳି ପୂର୍ବରୁ ଦେବୀଙ୍କୁ ପୃଷ୍ଠ-ଦେଶରେ ସଜ୍ଜିତ କରଯାଏ, ତାହାକୁ ମେରିଆ ବୋଲି କହନ୍ତି । ପର୍ବର ଚତୁର୍ଦ୍ଦଶ ଦିନ ମହାରାଜାଙ୍କର ଦରବାର ହୁଏ । ଏହି ଦିନକୁ ବଡ ଉତ୍ସବ କହନ୍ତି । ଅଠର ଦିନରେ ପଟ୍ଟୁଆର ହୁଏ । କନକ ଦୁର୍ଗାଙ୍କର ବିଜେ ପ୍ରତିମା ବିପୁଳ ଆଡ଼ମ୍ବରରେ ବିଜେ ହୁଅନ୍ତି । ତାଙ୍କ ସମ୍ମୁଖରେ ବସ୍ତରରୁ ଆନୀତ ପ୍ରକାଣ୍ଡ ଶ୍ୱେତ ପତାକା ଚାଲେ । ବିଜେ ପ୍ରତିମା ସହାସ୍ୟମୁଖ ଅଭିଷେକରେ ଦରବାର ହାଲକୁ ବିଜେ କରନ୍ତି । ତତ୍ପରେ ମହାରାଜ ହସ୍ତୀପୃଷ୍ଠରେ ବିଜେ କରନ୍ତି । ତାଙ୍କ ପଛରେ ପ୍ରଧାନ ପ୍ରଧାନ କର୍ମଚାରୀମାନେ ହାତୀରେ ବସି ଯାଆନ୍ତି । ଗଡ଼ର ଉତ୍ତର ପଟରେ ଦଶହରା ପଦା ନିରୂପିତ ଅଛି । ସମସ୍ତେ ବିରାଟ ପଟ୍ଟୁଆର ସହ ସେହିଠାରେ ଯାଇ ରୁଣ୍ଡହୁଅନ୍ତି । ମହାରାଜ ଦେବୀଙ୍କ ଉପାସନା କଲା ପରେ ଗୋଟାଏ ଲମ୍ବା ବାଉଁଶ ପୋତା ହୁଏ । ତାହା ଉପରେ ଗୋଟାଏ ବାଇଗଣ ରଖି ତାକୁ କାଣ୍ଡ ମରାହୁଏ । ଏହା ବ୍ୟତୀତ ବସନ୍ତ ନବରାତ୍ର ଉତ୍ସବ ମଧ୍ୟ ଜୟପୁରରେ ଅତି ଜାକଜମକରେ ପାଳିତ ହୁଏ ।

ବସ୍ତରରୁ ଆନୀତ ଧଳା ପତାକାର ଇତିହାସ ଏହି ଯେ, ବସ୍ତରର ରାଜା ଦରିଯ୍ୟାଲ ସିଂହ ଦେବ ଏବଂ ତାଙ୍କ ଭାଇ ଦଳଗଞ୍ଜନ ସିଂହ ଦେବଙ୍କ ମଧ୍ୟରେ ମନାନ୍ତର ଘଟିଲା । ଦଳଗଞ୍ଜନ ବିଦ୍ରୋହୀ ହୋଇ ରାଜ୍ୟରେ ମେଳ ଜାତକଲେ । ରାଜା ସେଠାରେ ରହିବା ନିରାପଦ ନ ମଣି ନନ୍ଦପୁର ଆସି ତତ୍କାଳୀନ ରାଜା ପ୍ରଥମ ବିକ୍ରମ ଦେବଙ୍କ ସାହାଯ୍ୟପ୍ରାର୍ଥୀ ହେଲେ । ତହୁଁ ନନ୍ଦପୁରର ରାଜା ସସୈନ୍ୟ

ବସ୍ତର ଅଭିମୁଖରେ ଅଭିଯାନ କରି ବିଦ୍ରୋହ ଦମନ ପୂର୍ବକ ବସ୍ତର ରାଜାଙ୍କୁ ରାଜ୍ୟରେ ପ୍ରତିଷ୍ଠିତ କଲେ । ବସ୍ତର ରାଜା ଦରିୟାଳ ସିଂହ ଦେବ ବନ୍ଧୁତ୍ୱ ଏବଂ କୃତଜ୍ଞତାର ନିଦର୍ଶନ ସ୍ୱରୂପ ୧୭୭୭-୭୮ ସାଲରେ କୋଟପାଡ଼ ପ୍ରଗଣା ବିକ୍ରମଦେବଙ୍କୁ ପ୍ରଦାନ କଲେ । ସେହି ସମୟରେ ବସ୍ତରର ବିରାଟ ଟୋକା ଜୟପୁରକୁ ଆଣିତ ହୋଇଥିଲା । ବୋଧହୁଏ ନନ୍ଦପୁର ସୈନ୍ୟ ବସ୍ତରର ମେଳିଆମାନଙ୍କଠାରୁ ତାହା ଛଡ଼ାଇ ଆଣିଥିଲେ । ସେହି ଟୋକା ଦଶହରା ଉତ୍ସବକୁ ନିବା ସମୟରେ ଜୟପୁରର ବୁରଖଣ୍ଡ ଗ୍ରାମର ଲୋକେ ତାକୁ ଜଗି ରହନ୍ତି । ସେଥିପାଇଁ ସେମାନେ ଜାଗୀର ଭୋଗ କରନ୍ତି ।

ଜୟପୁର ରାଜ୍ୟରେ ଅନେକ ସ୍ଥାନରେ ସାମୟିକ ମେଳା ଓ ଯାତ୍ରା ହୁଏ । ତାହା ଗୋଟିଏ ଗୋଟିଏ କ୍ଷୁଦ୍ର ପ୍ରଦର୍ଶନୀ । ତଦ୍ୱାରା ଅନ୍ତର୍ବାଣିଜ୍ୟ କୁଟୀରଶିଳ୍ପ ପ୍ରଭୃତିର ସୁବିଧା ହୁଏ । ଭାଗବତ ସପ୍ତା, ହରିହାଟ ପ୍ରଭୃତି ଅନେକ ଦେବୋତ୍ସବ ଦେଖାଯାଏ । ସପ୍ତାରେ ଜଗନ୍ନାଥ ଦାସଙ୍କ ନବାକ୍ଷରୀ ଓଡ଼ିଆ ଭାଗବତ ପାଠ ହୁଏ । ଜୟପୁର ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ସୁଦ୍ଧା ନିଜର ଜାତୀୟତା ହରାଇ ନାହିଁ । "ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର" ଓଡ଼ିଆ କବିଙ୍କର ଏ ଉକ୍ତି ସାର୍ଥକ । ଜୟପୁର ଓଡ଼ିଶାର ଏବଂ ଓଡ଼ିଶା ଜୟପୁରର । ଶତ ଶତ ବର୍ଷବ୍ୟାପୀ ବିଜାତୀୟ ପ୍ରବଳ ପ୍ରଭାବ ଏବଂ ଶାସନଗତ ବିଚ୍ଛେଦ ସହି ସୁଦ୍ଧା ସେ ତାହାର ନିଜତ୍ୱ, ମହତ୍ତ୍ୱ, ରକ୍ଷା କରି ଆସିଅଛି — ଏହାହିଁ ଜୟପୁରର ବିଶେଷତ୍ୱ । ଯେଉଁଠାରେ ଓଡ଼ିଆ ଶାସ୍ତ୍ରପୁରାଣ କାବ୍ୟ ଭାବରେ ପୂଜିତ ଏବଂ ପଠିତ ହୁଏ । ଓଡ଼ିଆ ରୀତିରେ ଜନ୍ମପତ୍ରିକା ଲିଖିତ ହୁଏ । ସେଥିରେ ପୁରୀ ଗଜପତି ରାଜାଙ୍କର ଅଙ୍କ ବସେ । ଓଡ଼ିଶାର ଓଷା, ବାର, ପର୍ବ ଜୟପୁରରେ ଚଳେ । ଏତେ ସାମ୍ୟ ଏତେ ପ୍ରମାଣ ଥାଇ ସୁଦ୍ଧା ଆନ୍ଧ୍ରମାନେ ଜୟପୁରକୁ ଓଡ଼ିଆ ରାଜ୍ୟ କହିବାକୁ କୁଣ୍ଠିତ । ଏହା ସ୍ୱାର୍ଥର ଉତ୍କଟ ଦୃଷ୍ଟାନ୍ତ ନୁହେଁ କି ? ଜଣେ ଆନ୍ଧ୍ର ଭ୍ରାତାଙ୍କର ବିଚିତ୍ର ଯୁକ୍ତି ଶୁଣିଲେ ହାସ୍ୟ ସମ୍ବରଣ କରି ହୁଏ ନାହିଁ । ସେ କହନ୍ତି — ଜୟପୁରର ଓଡ଼ିଆମାନେ "କଅଣ" ନ କହି "କଣ" ବୋଲି କହନ୍ତି । କଣ ଓଡ଼ିଆ ଶବ୍ଦ ନୁହେଁ, ବଙ୍ଗଳା ଶବ୍ଦ । କେହି କେହି କହନ୍ତି — ଜୟପୁର ଦ୍ରାବିଡ଼ ରାଜ୍ୟ; ମାତ୍ର ଏ ଅଦ୍ଭୁତ ଭାଷା ତତ୍ତ୍ୱବିଦ୍‌ଟି ତାଙ୍କୁ ଟିପି ବଙ୍ଗଳା ପ୍ରତି ସୁପ୍ରସନ୍ନ ହେଲେଣି । ତାଙ୍କର ଏ ଯୁକ୍ତିକୁ ପଟାନ୍ତର ନାହିଁ । ବଙ୍ଗ ଭାଷାରେ ତାଙ୍କର ଅସାଧାରଣ ବ୍ୟୁତ୍ପତ୍ତି ଥିଲାପରି ମଧ୍ୟ ବୋଧ ହୁଏ ।

ଙ୍କ ଭାଷାରେ "କପେ" ଶବ୍ଦକୁ ବୋଧହୁଏ ସେ "କଫ" ବୋଲି ଭାବିଥିବେ । ଏ ଅଦ୍ଭୁତ ପାଣ୍ଡିତ୍ୟ ଭାଷ୍ୟରପର ଗୋଟିଏ ମୂଲ୍ୟବାନ ଉପାଦାନ । କପେ ଅର୍ଥ କଅଣ ନୁହେଁ— କାହିଁରେ । କମ୍ ଶବ୍ଦରୁ କପ ହୁଏ, ତାହା ସଂସ୍କୃତଜ ଶବ୍ଦ । ଭଗ୍ୟେ ଆମ ଓଡ଼ିଆମାନଙ୍କୁ ଆନ୍ଧ୍ର ପଣ୍ଡିତ ବଙ୍ଗଳା ସାମିଲ କରିନାହାନ୍ତି— ଏହାକ ଓଡ଼ିଶାର କଠୋର ଉଦ୍ୟୋଗର ଫଳ । ପ୍ରାଚୀନ ଓଡ଼ିଆ ସାହିତ୍ୟରେ କପ ଶବ୍ଦ ଅପ୍ରଚୁର ନୁହେଁ । ଅନ୍ଧ୍ରଭ୍ରାତାଙ୍କ କପୋଳକଳ୍ପିତ ମତ ଶୁଣି ଏତିକି କହିଲେ ଯଥେଷ୍ଟ ହେବ ଯେ—'କପଂ ପୁଣି ଦେଖା ନ ଯାଉ ଯେତେ ଥାଇ ଜୀବରେ, ବିଷମ ସମସ୍ୟା ପୂରଣ ହେଲା ଏହି ଠାବରେ ।' ଏହିପରି ଅଖାଡ଼ୁଆ ବିତଣ୍ଡା ଯୁକ୍ତିଦ୍ୱାରେ ବିଦେଶୀ ସରକାରକୁ ଠକିବାକୁ ପ୍ରୟାସ କରିବା କମ୍ ବାହାଦୁରୀ ନୁହେଁ । ଗୋଟାଏମାତ୍ର ଶବ୍ଦର୍ଥ ଗୋଟାଏ ପ୍ରାଚୀନ ମହାଜାତିର ମୌଳିକ ତତ୍ତ୍ୱ ବୁଝିନେବା ଏବଂ ତାହାର ପ୍ରାଣ, ଆତ୍ମା ଜାଣିନେବା ବାସ୍ତବରେ ବିଚକ୍ଷଣ ବୁଦ୍ଧିର ପରିଚୟକ । ଏହିପରି କେତେକ ପ୍ରତାରଣା ସୃଷ୍ଟି କଲେ ଉତ୍କଳଙ୍କ ଜ୍ୟାମିତିର କଲେବରର ପୁଷ୍ଟି ହୋଇପାରେ । ଏକଥା ଏତିକି ଥାଉ । ଚଷୁକୁଷ୍ଟାରେ କିଛି ଫଳ ନାହିଁ ।

ଜୟପୁର ରାଜ୍ୟ ମଧ୍ୟରେ ଜୟପୁର ଏବଂ ନବରଙ୍ଗପୁର ଅଞ୍ଚଳରେ କୃଷିଯୋଗ୍ୟ ଉର୍ବର ଭୂମି ବିଶେଷ ପରିମାଣରେ ଅଛି । ସେଥିରେ କଣ୍ଡା, ସରୁଗ, ଡୋକଟା, ସୋରିଷ, ରାଶି, ଚୀନାବାଦାମ, ଧାନ, ମାଣ୍ଡିଆ, କନା, ସୁଆଁ, କୋଦୁଅ, ଝୋଟ, ତୁଳା ପ୍ରଭୃତି ନାନା ପ୍ରକାର ଶସ୍ୟ ପ୍ରଚୁର ପରିମାଣରେ ଫଳେ । ଜୟପୁରରେ ବିଲାତି ଅଙ୍ଗୁର ଚାଷ ହୁଏ । ତାହା ମାନ୍ଦ୍ରାଜ ଅଙ୍ଗୁରଠାରୁ ଶ୍ରେଷ୍ଠ, ମାତ୍ର ଶସ୍ତା । ପର୍ବତମାନଙ୍କରେ ବାବେଇ ତୃଣ ଅପର୍ଯ୍ୟାପ୍ତ ଜାତହୁଏ । ସେଥିରେ କାଗଜ ପ୍ରସ୍ତୁତ ହୋଇପାରେ । ମୁଗା ସୂତାର ମଧ୍ୟ ଅଭାବ ନାହିଁ । ବନ୍ୟସମ୍ପଦ ଯେ କେତେ ଅଛି, ତାହାର କଳନା ନାହିଁ । ଖଣିଜ ସମ୍ପଦର ମଧ୍ୟ ସୀମା ନାହିଁ । ଜୟପୁରରେ ଚିନିକଳ କାରଖାନା ଅନେକ ଚଳପାରେ ।

ଜୟପୁର ବାସ୍ତବରେ ସ୍ୱର୍ଣ୍ଣପ୍ରସୂ ରାଜ୍ୟ । ମାଲକାନଗିରି ତାଲୁକାସ୍ଥ ନଦୀରେ, ପାଣିର ସ୍ରୋତରୁ ସ୍ୱର୍ଣ୍ଣରେଣୁ ସଂଗୃହୀତ ହୁଏ । ସେ ସୁନା କେଉଁଠାରୁ ଆସି ଏହି ବାଲୁକାରେ ମିଶିଥାଏ, ତାହା କାହିଁରେ ଉପାୟ ନାହିଁ । ଜଣେ ଲୋକ ଦିନରେ କେତେକ ସୁନା ସଂଗ୍ରହ କରେ, ତାହାର ମୂଲ୍ୟ ଦୈନିକ ମଜୁରି

ଟଙ୍କରେ ତାମ୍ର ସମାନ । ସ୍ୱର୍ଣ୍ଣରେଣୁଗୁଡ଼ିକ ଖାଣି ଏବଂ କାନ୍ତବୋନ । ବୋଧହୁଏ କୌଣସି ଅଜ୍ଞାତ ଅଗମ୍ୟ ସ୍ଥାନରେ ସ୍ୱର୍ଣ୍ଣଖଣି ଅଛି । ସେହି ବାଟେ ନଦୀ ବୋହି ଆସି ସ୍ୱର୍ଣ୍ଣରେଣୁ ଭସାଇ ଆଣିଅଛି । ଯାହା ହେଉ, ଦିନେ ତାହା ନିଶ୍ଚେ ଆବି-ଷ୍କୃତ ହେବ । ବିଜ୍ଞାନର ଅଜ୍ଞାତ କିଛି ନାହିଁ । ବିଜ୍ଞାନ ଗୋଟାଏ ଅଦ୍ଭୁତ ଜିନିଷ । ଧରଣୀ ରାଣୀ ତାହାର ଅନନ୍ତ ସୁରୁଣା ଗର୍ଭାନ୍ତରରେ ଯେଉଁଠାରେ ଯେଉଁ ରତ୍ନ ପ୍ରଚ୍ଛନ୍ନରେ ସାଇତି ରଖିଅଛି, ଏ ଅଦ୍ଭୁତ ଜିନିଷ ଅଦ୍ଭୁତ କୌଶଳରେ ତାହା ସନ୍ଧାନ କରି ଲୁଟି ନେଉଅଛି ।

ନବରଙ୍ଗପୁର ଅନ୍ୟତମ ପ୍ରସିଦ୍ଧ ନଗର । ସେଠାରେ ନାଗରିକସୁଲଭ ଉପକରଣମାନ ଅଛି । ଅଧିକନ୍ତୁ ସେଠାରେ ଓଡ଼ିଆ ରଙ୍ଗମଞ୍ଚ ଅଛି । ସେଥିରେ ଓଡ଼ିଆ ନାଟକ ଅଭିନୀତ ହୁଏ । ଅଭିନୟ ଚିତ୍ତାକର୍ଷକ ବୋଲି ଅନେକ ବିଶିଷ୍ଟ ବ୍ୟକ୍ତିଙ୍କ ମୁଖରୁ ଶୁଣାଯାଏ । ଏହି ରଙ୍ଗମଞ୍ଚ ହେତୁ ସେ ଅଞ୍ଚଳର ଓଡ଼ିଆଭାଷା କ୍ରମଶଃ ମାର୍ଜିତ ହୋଇଆସୁଅଛି । କୋଟପାଡରେ ମଧ୍ୟ ରଙ୍ଗାଳୟ ଅଛି । କେତେ ଜଣ ଦେଶପ୍ରାଣ ଶିକ୍ଷିତ ଓଡ଼ିଆ ମାତୃସମାଜ ମାତୃଭାଷାର ପରିପୁଷ୍ଟିରେ ଦେହପ୍ରାଣ ସମର୍ପଣ କରିଅଛନ୍ତି । ନବରଙ୍ଗପୁରର ଜଉଶିଳ୍ପ ଉତ୍କଳବିଖ୍ୟାତ । ହାର, ଚଅର, ଟେଡ଼ି, ଶଙ୍ଖା, ବାଉଁର ଦୃଶ୍ୟ ଲୋଭନୀୟ । ତାହାର ସବୁ କୁଟି-କମ ଦେଖି ଆବଶ୍ୟକ ନ ଥିଲେ ହେଁ କିଣିବାକୁ ମନ ବାଧ୍ୟ କରେ । ଗୁମରରେ ବିଶେଷତ୍ୱ ଅଛି । ଜଉ ସ୍ୱଭାବତଃ ଭଙ୍ଗପ୍ରବଣ; ମାତ୍ର ଏ ଜଉର ଚଅଁର ସାଧା-ରଣ ଚଅଁର ପରି ଆନ୍ଦୋଳିତ ହେଲେହେଁ ଭାଙ୍ଗେ ନାହିଁ । ଶିଳ୍ପକଳାର ନବ-ରଙ୍ଗ ହେତୁ ନବରଙ୍ଗପୁର ନାମ ସାର୍ଥକ ହୋଇଅଛି । ଏ ଶିଳ୍ପଗୁଡ଼ିକ ବେଲ-ଗୁଣ୍ଠାର ପିତଳମାଛ ପରି ବିଦେଶକୁ ଗଲେ ସେଠାରେ ଉଚ୍ଚମୂଲ୍ୟରେ ବିକ୍ରୟ ହୋଇ ପାରନ୍ତା । ତଦ୍ୱାରା ଉତ୍କଳର ଶିଳ୍ପ ପ୍ରତିଷ୍ଠା ମଧ୍ୟ ଘୋଷିତ ହୁଅନ୍ତା । ନବରଙ୍ଗପୁରସ୍ଥ ପୂଜାରିଗୁଡ଼ାର ଲୌହ ଶିଳ୍ପ ଯେ କୌଣସି ଦେଶ ପକ୍ଷରେ ପ୍ରଶଂସାର୍ହ । ଟାଙ୍ଗିଆ, ଛୁରୀ, ଦେଶୀ ବନ୍ଧୁକ ପ୍ରଭୃତି କଳ କଉଶଳ ପରି ବୋଧ-ହୁଏ । ଏହାପରି ଜୟପୁରର ଅନେକ ସ୍ଥାନରେ ଅନେକ ଉତ୍କୃଷ୍ଟ ଶିଳ୍ପ ପ୍ରସ୍ତୁତ ହୁଏ ।

ବଂଶଧାରା, ନାଗାବଳୀ, ଇନ୍ଦ୍ରାବତୀ, ତେଲ, ଗୋଳାବ ଜୟପୁରର ପ୍ରଧାନ ନଦୀ । ଅନାମିତ, ସନାମିତ ନାଳ, ଘୋର କେତେ ଅଛି, ତାହାର

ସଂଖ୍ୟା ନାହିଁ । ଏ ସମସ୍ତ ନଦୀ ବନ ପର୍ବତରୁ କାଦୁଆର ସାର ଆଣି ସମ ଭୂମିରେ ଢାଳି ଦେଇ ଅଛନ୍ତି । ସେଥି ହେତୁ ମୃତ୍ତିକାର ଶକ୍ତି ବଢ଼ି ଉଠୁଅଛି । ନଦୀଗୁଡ଼ିକ· ଜୟପୁର ଭାଗ୍ୟରେ ପ୍ରକୃତି ଦେବୀଙ୍କର ଆଶୀର୍ବାଦଧାରା । ଇନ୍ଦ୍ରାବତୀର ଦୃଶ୍ୟ ଅତି ମନୋହର । ବାଲୁକା ଶଯ୍ୟାରେ ନଦୀର ଧାର ବହିଯାଉଅଛି—ଯେମନ୍ତ କି ଶାରଦୀୟ ଶୁକ୍ଳ ଘନ ଫାଟିଯାଇ କୃଷ୍ଣରେଖା ପରି ଆକାଶର କେତେକ ଅଂଶ ଦେଖାଯାଉଅଛି ଅଥବା ସତ୍ୟ, ଧର୍ମ ମଧ୍ୟରେ ଦୟାର ଧାରା ବହୁଅଛି ।

ଜୟପୁର ରାଜ୍ୟର ସର୍ବୋଚ୍ଚ ପର୍ବତର ନାମ 10 ଦେଓମାଳୀ, ତାହାର ଉଚ୍ଚତା ପ୍ରାୟ ୫୪୭୦ ଫୁଟ । ଏହା ଗଞ୍ଜାମ ଜିଲ୍ଲାସ୍ଥ ପୌରାଣିକ ମହେନ୍ଦ୍ର ଗିରିର ସମକକ୍ଷ । ଦେଓମାଳୀ ଜୟପୁର ମହାରାଜାଙ୍କର ପାଟହସ୍ତୀ । ଅନ୍ୟ ଏକ ପର୍ବତ ନିୟାମଗିରିର ଉଚ୍ଚତା ପ୍ରାୟ ୫୦୦୦ ଫୁଟ । ମାଳଅଞ୍ଚଳରେ ଯଥେଷ୍ଟ ବୃଷ୍ଟି ହୁଏ । ଜୟପୁରରେ ବୃଷ୍ଟିର ପରିମାଣ ହାରାହାରି ବାର୍ଷିକ ୭୫ ଇଞ୍ଚ । ଗ୍ରୀଷ୍ମର ଉତ୍ତାପ ମଧ୍ୟ ଊଣା ନୁହେଁ । ଏବର୍ଷ ଅର୍ଥାତ୍ ୧୯୩୪ ସାଲର ରୌଦ୍ର ଉତ୍ତାପ ୧୦୭ ଡିଗ୍ରୀ ପର୍ଯ୍ୟନ୍ତ ବଢ଼ିଥିଲା । ଶୀତ ମଧ୍ୟ ପ୍ରବଳ ହୁଏ । ମୂଳତଃ ଜୟପୁରରେ ତିନି ଋତୁ ଯାକ ପ୍ରବଳ । ମାତ୍ର ଏହା କହିଲେ ବସନ୍ତ ଋତୁ ପ୍ରତି ଅବିଚାର କରାହେବ । ସେଠାରେ ଫଗୁଣ ଚୈତ୍ରରେ ତ ବସନ୍ତ ହୁଏ, ଅଧିକନ୍ତୁ ଖରା, ବର୍ଷା, ଶୀତକାଳ ମଧ୍ୟରେ ବି ଋତୁସମ୍ରାଟଙ୍କର ପ୍ରଭାବ ଫୁଟିଉଠୁଥାଏ । ସୁତରାଂ ଜୟପୁର ବସନ୍ତର ଚିରପ୍ରିୟ ଲୀଳାସ୍ଥଳ । ସାହିତ୍ୟ ସମ୍ରାଟ ଯେଉଁଠି, ଋତୁସମ୍ରାଟ ସେହିଠି । ଅନ୍ୟଥା ତାଙ୍କୁ ଚଉପଟ ଦେଖି ସାହାଯ୍ୟ କରିବ କିଏ ? ଋତୁସମ୍ରାଟ ସାହିତ୍ୟସମ୍ରାଟଙ୍କର ବିଜ୍ଞ ବିଶ୍ୱାସୀ ପ୍ରଧାନ ମନ୍ତ୍ରୀ । ତାଙ୍କର ସୁମନ୍ତ୍ରଣାରେ ସାହିତ୍ୟସମ୍ରାଟ ସାହିତ୍ୟ ସାମ୍ରାଜ୍ୟ ପରିଚାଳନ କରନ୍ତି ।

ଜୟପୁରର ଜଳବାୟୁ ପୂର୍ବେ ଅତି ଅସ୍ୱାସ୍ଥ୍ୟକର ଥିଲା । ମାତ୍ର ଏଣିକି ନାନା ଚେଷ୍ଟାରେ ସ୍ୱାସ୍ଥ୍ୟର ପରିବର୍ତ୍ତନ ଘଟୁଅଛି । ଆଶ୍ଚର୍ଯ୍ୟର ବିଷୟ, ଏହି ଅସ୍ୱାସ୍ଥ୍ୟକର ଜଳବାୟୁରେ ବି ୯୦ ବର୍ଷର ସବଳ ହୃଷ୍ଟପୁଷ୍ଟ କର୍ମକ୍ଷମ ବୃଦ୍ଧ ବ୍ୟକ୍ତି ଦେଖାଯାନ୍ତି । ପଙ୍କିଳ ପୁଷ୍କରିଣୀରେ ମଧ୍ୟ କମଳ ଫୁଟି ଉଠେ ନାହିଁକି ?

---

1. ବାଘରା (ବାଗ୍ରା)—ଅପର କୋଲାବ ନଦୀବନ୍ଧ ଯୋଜନା କାର୍ଯ୍ୟକାରୀ ହେବାପରେ ଏହି ଜଳପ୍ରପାତ ଲୁପ୍ତ । ସାଲୁର–ଜୟପୁର ରାସ୍ତା (ଅଧୁନା ନଂ 43 ଜାତୀୟ ରାଜପଥ) ନିର୍ମିତ ହେବାପରେ ଜୟପୁର ଘାଟି ଆରମ୍ଭରେ ବାମପଟରେ 3 ମାଇଲ ଭିତରକୁ ଗଲେ ବାଗ୍ରାପ୍ରପାତ ଦୃଷ୍ଟିଗୋଚର ହେଉଥିଲା ।

2ଓ3. ଜୟପୁର-କୋରାପୁଟ ରାସ୍ତାରେ ଜୟପୁର ସୀମାନ୍ତରେ ବାମ ପାର୍ଶ୍ୱରେ ନୂଆରଙ୍ଗତୋଟା ପଡ଼େ । ଏଠାରେ ମଙ୍ଗଳବାର ଦିନ ପୂର୍ବପରି ହାଟବସେ । କିନ୍ତୁ ହାଟର ସେଇ ମନ-ମତାଣିଆ ପରବେଶ ଏବେ ଆଉ ନାହିଁ । ଏହି ଅଞ୍ଚଳଟିକୁ ସହର ଏବେ ଗ୍ରାସ କରିବାକୁ ବସିଲାଣି । ଦରବାର ମଣ୍ଡପ ଏବେ ପରିତ୍ୟକ୍ତ ଓ ଭଗ୍ନପ୍ରାୟ ।

4. ହାଟ—ଜୟପୁର ରାଜ୍ୟର ବିଭିନ୍ନ ସ୍ଥାନରେ ବିଭିନ୍ନ ଦିନରେ ହାଟ ବସୁଥିଲା । ହାଟ ବସୁଥିବା ବାରକୁ ନେଇ ସ୍ଥାନୀୟ ଲୋକେ ସପ୍ତାହର ଧାରଣା କରୁଥିଲେ । ବର୍ତ୍ତମାନ ମଧ୍ୟ ଏହି ହାଟମାନ ବିଧିବଦ୍ଧ ବସୁଛି । ତେବେ ସେତେବେଳେ ହାଟ କେବଳ କ୍ରୟବିକ୍ରୟର ସ୍ଥଳୀ ନ ଥିଲା ଏହାଥିଲା ଏକ ସାଂସ୍କୃତିକ ମିଳନ ମଞ୍ଚ । ଏବେ ବଜାର ସଂସ୍କୃତିର ଅନୁପ୍ରବେଶ ଫଳରେ ହାଟର ମାହାତ୍ମ୍ୟ କମିଆସୁଛି ।

5. ନନ୍ଦପୁର— ନନ୍ଦପୁରରେ କୋଟନୀ ପାହାଡ଼ ରହିଛି; କିନ୍ତୁ ପାହାଡ଼ ତଳେ ଥିବା କନକ ଦୁର୍ଗାଙ୍କ ମନ୍ଦିର ଏବେ ଏକ ଧ୍ୱଂସସ୍ତୂପ । ଅବଶ୍ୟ କନକ ଦୁର୍ଗା ରାଜପରିବାରର ଇଷ୍ଟଦେବୀ ହେତୁ ରାଜଧାନୀର ପରିବର୍ତ୍ତନପରେ କନକଦୁର୍ଗାଙ୍କ ପାଇଁ ଜୟପୁରଠାରେ ମନ୍ଦିର ପ୍ରତିଷ୍ଠା କରି ତାଙ୍କୁ ସ୍ଥାପନ କରାଯାଇଥିଲା । ରାଜବାଟୀ ମଧ୍ୟରେ କନକ ଦୁର୍ଗାଙ୍କ ମନ୍ଦିର ବର୍ତ୍ତମାନ ରହିଛି । କିନ୍ତୁ କିଛିଦିନ ତଳେ ଏହି ମନ୍ଦିରରୁ ପ୍ରାଚୀନ ତଥା ଅତି ମନୋହର ଦେବୀ ପ୍ରତିମାଟି ଅପହୃତ ହୋଇଯାଇଛି ।

6. ଗୁପ୍ତେଶ୍ୱର ଗୁହା— କୋଲାବ ନଦୀ ତୀରରେ ଏକ ପ୍ରାକୃତିକ ଗୁମ୍ଫା ମଧ୍ୟରେ ଗୁପ୍ତେଶ୍ୱର (ଶିବ) ଲିଙ୍ଗ ଆରାଧିତ । ସମ୍ପ୍ରତି ଗୁପ୍ତେଶ୍ୱର ଏ ଅଞ୍ଚଳର ଏକ ପ୍ରଧାନ ଶିବ ପୀଠରୂପେ ପ୍ରଖ୍ୟାତ । ଏ ଅଞ୍ଚଳର ପ୍ରାକୃତିକ ଶୋଭା ଦର୍ଶକଙ୍କୁ ଆକୃଷ୍ଟ କରେ । 'ଗୁପ୍ତେଶ୍ୱର'କୁ ଯିବା ପାଇଁ ଅଳ୍ପ କିଛି ବର୍ଷ ମଧ୍ୟରେ ରାସ୍ତାଘାଟର ବିଶେଷ ଉନ୍ନତି ଘଟିଛି । ଏଠାରେ ରାଜ୍ୟ ସରକାରଙ୍କର ପର୍ଯ୍ୟଟନ ବିଭାଗ ଆନୁକୂଲ୍ୟରେ ଏକ ସୁରମ୍ୟ ପାନ୍ଥନିବାସ ନିର୍ମିତ ହୋଇଛି । ଶିବରାତ୍ରି ଦିନ ଏଠାରେ ଏକ ବିରାଟ ମେଳା ଅନୁଷ୍ଠିତ ହୁଏ । ଏବେ ଶାବର ଶ୍ରୀକ୍ଷେତ୍ର, କୋରାପୁଟସ୍ଥ 'ନିଶାଣୀମୁଣ୍ଡା' ଏବଂ 'ଗୁପ୍ତେଶ୍ୱର' ଉଭୟ ସ୍ଥାନରେ ଏହି ସମୟରେ ଏକ ବିରାଟ ଆଦିବାସୀ ମେଳାର ଆୟୋଜନ କରି କୋରାପୁଟ ଅଞ୍ଚଳ ପ୍ରତି ବିପୁଳ ସଂଖ୍ୟକ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିବା ପାଇଁ 1995 ମସିହାଠାରୁ 'ଡ଼ଙ୍ଗର' ଉତ୍ସବର ଆରମ୍ଭ ହୋଇଛି । ପ୍ରତିବର୍ଷ ଏହି ଉତ୍ସବର ଆୟୋଜନ କରିବା ପାଇଁ ଉଦ୍ୟମ ଅବ୍ୟାହତ ରହିଛି ।

7. ରାମଗିରି— ମହାକବି କାଳିଦାସ ତାଙ୍କର ଅମର କାବ୍ୟ 'ମେଘଦୂତ', ଏହିଠାରେ ରଚନା କରିଥିବା ଜଣାଯାଏ । 'ରାମଗିର୍ଯ୍ୟାଶ୍ରମେଷୁ' ଏବଂ 'ସାନୁମାନାମ୍ରକୂଟଃ'— ସ୍ପଷ୍ଟ ରାମଗିରି ଓ ଆମ୍ରକୂଟ (ଅମରକୋଟ)ର ସୂଚନା ଦିଏ । ଆଷାଢ଼ସ୍ୟ ପ୍ରଥମ ଦିବସେ

ଏହି କବିତାଟି ପ୍ରଥମ ଖଣ୍ଡ ତୃତୀୟ ସଂଖ୍ୟା "ନବଭାରତ"ରେ ପ୍ରକାଶିତ ହୋଇଥିଲା ।

ଉପର୍ଯ୍ୟୁକ୍ତ କବିତାଟି ସ୍ୱତନ୍ତ୍ର ଧରଣର । ପଦ୍ୟ ପରି ପଢିଲେ ଏହାର ମାଧୁର୍ଯ୍ୟ ଉପଲବ୍ଧି ହେବ । ପ୍ରଥମ କେତେ ଧାଡିରେ ରୌଦ୍ର ରସ ଖୁବ୍ ଫୁଟିଅଛି । "ଉତ୍କଳ ବିକଳ" ଶବ୍ଦଟି କେବଳ ଓଡ଼ିଆ ଶବ୍ଦ ଏବଂ ଓଡ଼ିଆ ଭାଷାର ପ୍ରକୃତି ଅନୁସାରେ ଗଠିତ । ଏ ଶବ୍ଦ ପ୍ରୟୋଗଦ୍ୱାରା ଗୋଟିଏ ପୁରୁଣା ଲୁପ୍ତ ଶବ୍ଦର ଉଦ୍ଧାର ସାଧନ କରାଯାଇଅଛି । ଏହିପରି ଯେତେ ପୁରୁଣା ଶବ୍ଦ ଉଦ୍ଧାର କରାଯାଇପାରେ ଭାଷାର ଅଭିବୃଦ୍ଧି ସଙ୍ଗେ ସଙ୍ଗେ ଭାବ ପ୍ରକାଶ ସେତେ ସରଳ ହୋଇଆସିବ । "ସ୍ଥାନେ" ପରିବର୍ତ୍ତରେ "ଥାନେ" ଶବ୍ଦ ହାର ଅନ୍ତର୍ଦୃଷ୍ଟିର ପରିଚୟକ । ତାହା କୋମଳ ଏବଂ ମଧୁର । ଶବ୍ଦକୁ ଶ୍ରୁତିସୁଖକର କରିବା ପାଇଁ ଏଭଳି କଠାଛଠା କରିବାର ଅଧିକାର କବି ଲେଖକର ଅଛି, ଏହା ପୂର୍ବରୁ ଉକ୍ତ ହୋଇଅଛି । "ଦୁଃଖଦ ଘନ ବୃଦ୍ଧି, ସୁଖଦ କ୍ଷପାକ୍ଷୟ । ପାପୀ ଚରିତ୍ର, ସୁକୃତି ଗତାୟୁ ନଷ୍ଟଧୟ" ଏହି ଦୁଇ ଧାଡ଼ି ସୂକ୍ତି ସଦୃଶ ମହାମୂଲ୍ୟବାନ୍ । ଏହି କବିତାଟି ରୀତି ନବୀନ ପ୍ରାଚୀନ ଉଭୟ ରୀତିର ସୁନ୍ଦର, ମଧୁର ସମାବେଶ । ଏହା ରାଜକବିଙ୍କ ଲେଖାର ଅପୂର୍ବ ବିକାଶ ।

ବ୍ୟାକରଣରେ ସାହିତ୍ୟ ସମ୍ରାଟଙ୍କର ପାଣ୍ଡିତ୍ୟ ଅସାଧାରଣ; ତେଣୁ ବ୍ୟାକରଣ ତାଙ୍କର ଅତି ପ୍ରିୟ । ସମୟ ସମୟରେ ସେ ବ୍ୟାକରଣ ସମ୍ବନ୍ଧୀୟ ପ୍ରବନ୍ଧ ଲେଖି ପତ୍ରପତ୍ରିକାରେ ପ୍ରକାଶ କରନ୍ତି । ତାଙ୍କର ବ୍ୟାକରଣୀୟ ସମାଧାନ ସଂସ୍କୃତ ବ୍ୟାକରଣର ସୂତ୍ରାନୁସାରେ ହୁଏ । ୫।୭।୧୯୩୪ ତାରିଖରେ ପ୍ରକାଶିତ ସାପ୍ତାହିକ "ନବୀନ"ରେ ତାଙ୍କର "ନବରସ" ନାମରେ ଗୋଟିଏ କବିତା ମୁଦ୍ରିତ ହୋଇଥିଲା । ତାହା ଏଠାରେ ଉଦ୍ଧୃତ ହେଲା । ସେଥିରୁ ତାଙ୍କର ବ୍ୟାକରଣଜ୍ଞାନ ସ୍ପଷ୍ଟ ଅନୁମେୟ ।

## ନବ ରସ

ଶୃଙ୍ଗାର ବୀର କରୁଣ ରୌଦ୍ର ଭୟାନକ,
ଅଦ୍ଭୁତ ବୀଭତ୍ସ ହାସ୍ୟ ଶାନ୍ତ ଏ ନବକ ।
ରସ ବୋଲି ଖ୍ୟାତ, ଏଥି ପ୍ରଧାନ ଶୃଙ୍ଗାର,
ମୋଦଦ, ପ୍ରେମୋତ୍ପାଦକ ସୃଷ୍ଟି ସ୍ଥିତ୍ୟାଧାର ।

ସାତ୍ତ୍ୱିକ ଶୃଙ୍ଗାର ପ୍ରେମ ଭକ୍ତି ପରିଣାମ,
ସେହି ପୁଣି ଆଧ୍ୟାତ୍ମିକ ଅତ୍ୟନ୍ତାଭିରାମ ।
ରାଜସ ତାମସ ଯୁକ୍ତ ଶୃଙ୍ଗାର ବିଷୟ—
ସକ୍ତ କାମ ମୋହ ପରିଣାମଟି ନିଶ୍ଚୟ ।
ଆବର ଆଧିଭୌତିକ ଅତି ଭୟଙ୍କର,
ହିଂସା ଶୋକାଦି ଦୁର୍ଗୁଣମାନଙ୍କ ଆକର ।
ନିଜ ଗୁଣାନୁରୂପରେ ଶୃଙ୍ଗାରକୁ ନରେ,
ଅନୁଭବ କରି ତୁଷ୍ଟି ଲଭନ୍ତି ମନରେ ।
ଶ୍ରୀକୃଷ୍ଣ ରାସ ବିଳାସ ଯେପରି ମୋହଦ,
ରୁଦ୍ର, ପ୍ରଳୟ ତାଣ୍ଡବ ଯେପରି ତୋଷଦ ।
ପ୍ରେମୈକବୀଜ ଅଟଇ ସେ ଶୃଙ୍ଗାର ରସ,
ମୋଧୈକବୀଜ ରୂପରେ ଶୋହେ ବୀର ରସ ।
ଆନନ୍ଦୈକବୀଜ ଶାନ୍ତ ରସ ଏ ତିନିରେ,
ସୃଷ୍ଟି ସ୍ଥିତି ଲୟ ତିନି ବର୍ତ୍ତିନ୍ତି ବିଧିରେ ।
ସୁଷୁପ୍ତିରେ ସମାଧିରେ ନର ଶାନ୍ତ ରସ,
ଉପଲବ୍ଧି କରି ଚିତ୍ତେ ଲଭଇ ହରଷ ।
ପ୍ରବର୍ତ୍ତି ହିଂସୈକବୀଜ ହୋଇ ରୌଦ୍ର ରସ,
ଦ୍ୱେଷୈକବୀଜ ସ୍ୱରୂପ ସେ ବୀଭତ୍ସ ରସ ।
ବିଷାଦୈକବୀଜ ରୂପ କରୁଣ ଅଟଇ,
ଅଜ୍ଞାନୈକବୀଜାକାର ଅଦ୍ଭୁତ ହୁଅଇ ।
ଭୟୈକବୀଜ ଅଟଇ ଭୟାନକ ରସ;
କୌତୁକୈକବୀଜ ହୋଇ ବସେ ହାସ୍ୟ ରସ ।
ଏ ନବ ରସଙ୍କୁ କବିବରେ ବିବିଧରେ,
ବିସ୍ତାରେ ବର୍ଣ୍ଣନ କରିଛନ୍ତି ଉଚିତରେ ।
ଶୃଙ୍ଗାର ବୀର ରସକୁ ମାତ୍ର ଅଙ୍ଗୀ କରି,
ଇତର ରସମାନଙ୍କୁ ଅଙ୍ଗ ରୂପେ ଭରି ।
ଦୃଶ୍ୟ କାବ୍ୟନାଟକକୁ ପୂର୍ବ କବିବରେ,
ସଂସ୍କୃତ ଭାଷାରେ ରଚିଛନ୍ତି ମଞ୍ଜୁଳରେ ।

କାବ୍ୟର ଜୀବନ ରସ, କାବ୍ୟ ତାହା ବିନା,
ଅତି ଶୁଷ୍କ ତୃଣ ପରି ଅନାଦୃତ ଘିନା ।
ରସ ପୋଷଣରେ ହୁଏ ପାଠକଙ୍କ ପୋଷଣ,
ତେଣୁ ବ' କାବ୍ୟ କରେ ଜନ ମାନସାକର୍ଷଣ ।
ରସାତ୍ମକ କାବ୍ୟକର୍ତ୍ତା ଆପଣାର ମନେ,
ରସାଧିପତ୍ୟକୁ ଭୁଞ୍ଜ ପରକାରେ ମନେଣ ।
ସରସ ହୃଦୟୁ କବି ମାତ୍ର ରସମୟ,
କାବ୍ୟ ରଚି ସ୍ଥିର ଯଶ ଲଭେ ଏ ନିଶ୍ଚୟ ।

ନବରସ ଏବଂ ତାହାର ରୂପ ସୁନ୍ଦର ଭାବରେ ରଚିତ ହୋଇଅଛି । ସାହିତ୍ୟସମ୍ରାଟ ଆଦ ରସକୁ ଉଚ୍ଚ ସ୍ଥାନ ଦେଇଅଛନ୍ତି; ଦେବାହିଁ ଉଚିତ । ରସ ମଧ୍ୟରେ ସେ ପ୍ରଧାନ ବୋଲି ତାହାର ନାମ ଆଦ ରସ ହୋଇଅଛି । ଆଦ ରସହିଁ ଜଗତର ସୃଷ୍ଟି ଏବଂ ବୃଦ୍ଧିର ମୂଳ ଉପାଦାନ । ତାହା ଦୁଇ ପ୍ରକାର — ଦୈବିକ ଆଦ ରସ ଏବଂ ପାଶବିକ ଆଦ ରସ । ପ୍ରଥମଟି ଦେବତା ହିଁ ଖିଯୁଛି ପିଶାଚ । ଗୋଟିଏ ସ୍ୱର୍ଗର ଅମୃତ, ଅପରଟି ନରକର ପୂତିଗନ୍ଧମୟ ପୂଜରକ୍ତ । ଗୋଟିଏ ନମସ୍ୟ, ଆରଟି ଘୃଣ୍ୟ । ଦୈବିକ ଆଦ ରସର ପ୍ରାଣ ପ୍ରେମ ଏବଂ ଭକ୍ତି; ମାତ୍ର ପାଶବିକ ଆଦ ରସର ପ୍ରାଣ ପାପ ଏବଂ ମୃତ୍ୟୁ । ପୈଶାଚିକ ଆଦ ରସ ନୁହେଁ, ତାହା କୁତ୍ସିତ ରସ । ଦୈହିକ ମିଳନ ତାହାର ଧର୍ମ; ମାତ୍ର ଦୈବିକ ବା ଶୁଦ୍ଧ ଆଦ ରସ ଆତ୍ମାର ପବିତ୍ର ନିବିଡ଼ ମିଳନର ଘଟକ ସ୍ୱରୂପ ।

ଆଦ ରସ ବିନା କାବ୍ୟ ହୋଇପାରେ ନାହିଁ । ସୂକ୍ଷ୍ମଭାବରେ ଆଲୋଚନା କଲେ ଏହି କଥାର ମର୍ମ ସୁବୋଧ । ଭାଷା ଏବଂ ଭାବର ମିଳନରେ କାବ୍ୟ, କବିତା, ପ୍ରବନ୍ଧ ପ୍ରଭୃତିର ଉତ୍ପତ୍ତି । ଭାଷାକୁ ଛାଡ଼ ଭାବ ତିଷ୍ଠିପାରିବ ନାହିଁ କିମ୍ବା ଭାବକୁ ଛାଡ଼ ଭାଷା ତିଷ୍ଠିପାରିବ ନାହିଁ । ସୁତରାଂ ପ୍ରତ୍ୟେକ କାବ୍ୟ କବିତାଦିରେ ଆଦ ରସ ବିଦ୍ୟମାନ । ସବୁଠାରେ ଭାଷା ଓ ଭାବର ପବିତ୍ର ବିବାହ ଲଗି ରହିଅଛି । ଆଦ ରସ ଆବଶ୍ୟକ; ମାତ୍ର ବିଭତ୍ସ ଆଦ ରସ ଆଦରର ପାତ୍ର ନୁହେଁ । ବିଶ୍ୱବ୍ରହ୍ମାଣ୍ଡ ଆଦରସରେ ପୂର୍ଣ୍ଣ; ମାତ୍ର ଏହା ବୋଲି କୁକ୍କୁଟ କୁକ୍କୁଟୀ ପରି ସବୁବେଳେ ଦେହରେ ଘାଣ୍ଟି ହେବା ସମୟରେ ଶ୍ରେୟସ୍କର ନୁହେଁ । ସବୁ କାର୍ଯ୍ୟରେ ନିର୍ଦ୍ଦିଷ୍ଟ ସୀମା ଅଛି । ସେହି ସୀମା

ଅତିକ୍ରମ କଲେ ବିପଦ ଅବଶ୍ୟମ୍ଭାବୀ । ପ୍ରାଣଘାତୀ ବିଷ ବି ଔଷଧରେ ବ୍ୟବହୃତ ହୁଏ; ମାତ୍ର ତାହାର ମାତ୍ରା ବଳିପଡ଼ିଲେ ହିତ ପରିବର୍ତ୍ତେ ବିପରୀତ ହୁଏ । ଅତି ଶବ୍ଦଟି ବଡ଼ ବିଷମ, ଏହି ହେତୁରୁ "ଅତି ସର୍ବତ୍ର ବାଧତେ" ବୋଲି ମହାଜନମାନେ କହି ଯାଇଅଛନ୍ତି ।

ପଦ୍ୟ ପରି ଗଦ୍ୟ ରଚନାରେ ମଧ୍ୟ ବ୍ରଜକବି ଶ୍ରୀ ବିକ୍ରମ ଦେବ ବର୍ମା ମହୋଦୟଙ୍କର ଶକ୍ତିର ବିଶେଷ ଘଟିଅଛି । ଉଦାହରଣ ସ୍ୱରୂପ ତାଙ୍କ ଲିଖିତ ଗୋଟିଏ ଗଳ୍ପ ଏଠାରେ ପ୍ରଦର୍ଶିତ ହେଲା—

## ଗୁଣବତୀ ପତ୍ନୀ

ନିପଟ ନିଦାଘ ସମୟ । ଜଗତ ଆତପାନଳର ଆହୁତି ହୁଏ । ଦିନ ଦଶଘଣ୍ଟା ପୂର୍ବରୁ ପଶୁପକ୍ଷିଚୟ ତରୁ ଛାୟାଶ୍ରିତ, ଭୋଗିଗଣ ବଲ୍ମୀକ ଗର୍ଭ-ସ୍ଥିତ, ଭୋଗିଜନ କର୍ପୂର ମିଶ୍ରିତ ଚନ୍ଦନ ଚର୍ଚ୍ଚିତ; କିନ୍ତୁ ରନ୍ଧନାଦି ଗୃହକୃତ୍ୟ କାରିଣୀ ଗୃହିଣୀର ମାତ୍ର ବିଶ୍ରାନ୍ତି କିମ୍ବା ଶୈତ୍ୟୋପଲବ୍ଧି ଘଟେ ନାହିଁ । କୋର୍ଟ ଏବଂ ସ୍କୁଲ ବନ୍ଦ । ଧନାଢ୍ୟମାନେ ଉଦକମଣ୍ଡଳାଦି ସ୍ଥାନମାନଙ୍କର ବାସ କରନ୍ତି । ଧନହୀନ କୋଠାରେ ବସି ବ୍ୟଜନ ଚାଳି ଚାଳି ଅର୍ଦ୍ଧଦଗ୍ଧା ଗୃହିଣୀକୃତ ରନ୍ଧନର ସମାଲୋଚନା କରେ ।

ଏମନ୍ତ ସମୟରେ ଆପଣାର ଏକମାତ୍ର ପୁତ୍ର ପୂର୍ଣ୍ଣଚନ୍ଦ୍ର ଲଣ୍ଡନରେ ତିନିବର୍ଷ ପଢ଼ି ବାରିଷ୍ଟର ପରୀକ୍ଷାରେ ପାସକରି ଘରକୁ ବାହୁଡ଼ିଆସୁଥିଲା ସମ୍ବାଦ ଜାଣି ନାରାୟଣ ନାୟକର ଗୃହିଣୀ କମଳା ଚୁଲ୍ଲୀ ମୁହଁରେ ବସି ପିଠା ଭାଜୁଥିଲା । ପୁଅଠାରେ ଥିବା ପ୍ରେମ ବଶରୁ ସେ କଷ୍ଟ ପାଉଥିଲା । ତତ୍ପୂର୍ବ ଦିନ ତାର ପୁତ୍ରବଧୂ ହୀରାମଣି ମାଆ ଘରରୁ ଆନୀତା ହୋଇଥିଲା । ସେ ଶାଶୁ ପାଖେ ବସି ପିଠା ଗଢ଼ୁଥିଲା । କମଳା ସରଳା ଏବଂ କୋମଳା । ସେ ବୋହୂକୁ ଅତ୍ୟନ୍ତ ଲାଳନ କରେ ।

ନାରାୟଣ କେବଳ ନାଶକୋପାଧିକାରକ ମାତ୍ର ନୁହେଁ, ସେ ଲକ୍ଷ୍ମୀପୁର ଗ୍ରାମର ଅଧିକାରୀ । ବିଶାଖପଟ୍ଟଣ ମଣ୍ଡଳର ଗ୍ରାମାଧିକାରୀ ନାୟକ ବୋଲାଏ । ନାରାୟଣ ଗୃହବାସ, ହଳବଳଦ, ହଳଆମୂଲିଆ ରଖି ଏବଂ କିଛି ମହାଜନୀ

କଟ କେତେ ଦିନମ ହଙ୍କାର ଅଧିକାଂଶ ନଷ୍ଟ ହୋଇଥିଲା । ସେ ଲୋଭୀ ହୋଇ-ଥିଲେ ହେଁ, ନିଜ ତନୁଜଙ୍କୁ ନଷ୍ଟ କରିବା ଉଦ୍ଦେଶ୍ୟରେ ଆଙ୍ଗ୍ଲୋ ଭାଷା ପଢ଼ିବା ପାଇଁ ଜୟପୁରର ହାଇସ୍କୁଲକୁ ପଠାଇଲେ । ପୂର୍ଣ୍ଣଚନ୍ଦ୍ରର କୁଶାଗ୍ରବୁଦ୍ଧି, ସେ କେଉଁ କ୍ଲାସରେ ଫେଲ ନୋହି ମାଟ୍ରିକୁଲେସନ ପାସ କରି ବିଜୟ ନଗର କଲେଜରେ ଚାରିବର୍ଷ ପଢ଼ି ବି.ଏ. ଉପାଧି ପାଇଲେ । ତେବେ ନାରାୟଣ ପୁଅକୁ ପଢ଼ାଇସାରି ରେଭେନ୍ୟୁ ଡିପାର୍ଟମେଣ୍ଟରେ ପ୍ରବେଶ କରାଇବାକୁ ଉଦ୍ୟତ ହେଲା । ସେ ବିଭାଗରେ ପ୍ରବେଶିଲେ କାଳେ ପୁଅ ମେଜିଷ୍ଟ୍ରେଟ୍ ହେବ ବୋଲି ତାର ଆଶା । କିନ୍ତୁ ପୂର୍ଣ୍ଣଚନ୍ଦ୍ର ଗ୍ରହଣ କରିବାକୁ ଅସମ୍ମତ ହୋଇ ଆଇନ ପଢ଼ିବା ପାଇଁ ଜିଦ୍ କଲା । ସେ ସରିକ ପୁଅର ପଢ଼ା ପାଇଁ ବେଶି ଧନ ବ୍ୟୟିତ ହୋଇଥିଲା କାରଣରୁ ତାହା ବନ୍ଦ କରାଇବାକୁ ବାପ ବହୁବିଧ ଯତ୍ନ କଲା । କିନ୍ତୁ ପୁଅର ଜିଦର ବଶୁଁ ଏବଂ ମାଇପର ଅନୁରୋଧ ବଶୁଁ ସେ ପୁଅକୁ ମାନ୍ଦ୍ରାଜର ଲ କଲେଜରେ ପଢ଼ାଇବାକୁ ମଙ୍ଗିଲା । କମଳା ସର୍ବଦା ପୁତ୍ରପକ୍ଷ-ପାତିନୀ । ଜନନୀ ସର୍ବଦା ସନ୍ତାନପକ୍ଷପାତିନୀ ସିନା ।

ପୂର୍ଣ୍ଣଚନ୍ଦ୍ର ବିଜୟ ନଗରରେ ପଢ଼ୁଥିଲା ସମୟରୁ ଇଂରେଜ ଗମନୋ-ଦ୍ଦେଶ୍ୟ ତା ହୃଦୟରେ ପୋଷଣ କରୁଥିଲା ହେତୁରୁ ସେ ବୋଇଲା— "ଦେଖ, ହାତ ଗୁଣ୍ଡର ଦଶ ଟାଣି କରି ମାନ୍ଦ୍ରାଜରେ ଆଇନ ପଢ଼ି ପାସ କଲେ ଓକିଲ ହୋଇ ମକେଲଙ୍କ ଏବଂ ଅଧିକାରୀଙ୍କ ଖୋସାମତ କରୁ କରୁ ମୋ ଜୀବନ ଅନ୍ତ ହେବ । ଚାକରର ପ୍ରାୟଶଃ ଏକ ମାତ୍ର ପ୍ରଭୁ; କିନ୍ତୁ ଓକିଲର ସମଗ୍ର ଜଗତଯାକ ପ୍ରଭୁ । ଅତଏବ ମୁଁ ଓକିଲ ହେବି ନାହିଁ, ଲଣ୍ଡନରେ ଆଇନ ପଢ଼ି ବାରିଷ୍ଟର ହେବି । ବାରିଷ୍ଟର ହେବାର କେତେକ ସମୟରେ ଜିଲ୍ଲାଜଜ୍ କାର୍ଯ୍ୟ ପାଇବି ।

ଏତେକ ଶୁଣିଲା ମାତ୍ରେ କମଳା ଆନନ୍ଦାବ୍ଧିରେ ଭାସିଲା । ନାରାୟଣ ବୋଇଲା—"ଏବେ ଏ ଦେଶରେ ଯେତେ ଲୋକ ବାରିଷ୍ଟର ହୋଇଅଛନ୍ତି; ସେମାନେ ସମସ୍ତେ ତ ଜଜ୍ ହୋଇ ନାହାନ୍ତି, ତୁ ଆଜି ବିଲାତ ଯାଇ କାଲିକି ବାରିଷ୍ଟର ହୋଇ ପରଦିନ ଆସିବା ମାତ୍ରେ ଜଜ୍ କାର୍ଯ୍ୟ ପାଇପାରିବୁ, ବୋଲି-ଯାଇ ନ ପାରେ । ତୁ ବିଲାତରେ ତିନି ଚାରିବର୍ଷ ରହି ଜାତିକି ଏବଂ ସମ୍ପତ୍ତିକି ମାଟି କରିବୁ ମାତ୍ର । ତୁ ବିଲାତରେ ଆଇନ ପଢ଼ିବା ପାଇଁ ଯେତେ ଧନ ଖର୍ଚ୍ଚ କରିବୁ, ସେତେ ଧନ ଏଠାରେ ରିଣ ଦେଲେ ତା'ର କାଳାନ୍ତରରେ ତୁ ଏବଂ ତୋ କୁଟୁମ୍ବ କୌଣସି କାର୍ଯ୍ୟ ନ କରି ଦୁଧା ଦୁଃଖରେ ବଞ୍ଚିପାରିବ । ମଧ୍ୟ ସେହିରୁ

ଧନ ତୋତେ ଦେବାକୁ ମୋଠାରେ ନାହିଁ । ଅତଏବ ଦୁରାଶା ଛାଡ଼ି କାର୍ଯ୍ୟ ପାଇଁ ଯତ୍ନ କର, ନତୁବା ବିଲାତ ନ ଯାଇ ମାନ୍ଦ୍ରାଜରେ ଆଇନ ପଢ଼ ।"

ଏହା ଶୁଣି ପୁତ୍ର ପ୍ରତ୍ୟୁତ୍ତର ଦେଲା—"ଏବେ ଯେଉଁ ଜନେ ବାରିଷ୍ଟର ହୋଇଅଛନ୍ତି, ତାଙ୍କର ଗୃହର କବାଟ ମୁନ୍ଦା ନ ଥିବ କମ୍ବା ସେମାନେ କୌଶଳହୀନ ହୋଇଥିବେ । ମୁଁ ବାରିଷ୍ଟର ହେଲେ ମୋ କୌଶଳ ବଳରେ ଜଜ୍ କାର୍ଯ୍ୟ ନିଶ୍ଚେ ଲଭିବ । ବିଲାତ ଗଲେ ଜାତିଯାଏ ବୋଲିବା ଧାରଣା ନିତାନ୍ତ ପୁରୁଣା । ଆଜକାଲ ବିଲାତ ହୋଇଛି ଚରମ ପବିତ୍ର ତୀର୍ଥସ୍ଥାନ; ବିଲାତ-ଫେରା ବ୍ୟକ୍ତି ହେଉଛି ସଭ୍ୟବର ।"

ତେବେ କମଳା ନିଜ ପତିଙ୍କ ଉଦ୍ଦେଶି ବୋଇଲା—"ଆହେ, ତୁମେ ଧନ ଲୋଭରୁ ଗୋଟିଏମାତ୍ର ପୁଅକୁ ଭଲ ପାଠ ପଢ଼ାଇ ବଡ଼ କରିବାକୁ ମଙ୍ଗ ନାହିଁ । ଧନ ଅରଜି ରଖି ଭଲ କାମରେ ଖରଚ ନ କଲେ ସେ ତ ସଙ୍ଗରେ ଯାଏ ନାହିଁ । ଭଲ କାମରେ ଖରଚ ହେବ ତ ହେଉ । ତା ପାଇଁ ଭାବନା କାହିଁକି ? କାଲିକି ପୁଅ ଜଜ୍ ହେଲେ, ସେ କେତେ ଧନ ଅରଜିବ ନାହିଁ ? ଜନ ଧନକୁ ଅରଜେ, ନା ଧନ ଜନକୁ ଅରଜେ ? ଏଣୁ ତୁମେ ଅବଶ୍ୟ ଧନ ଦେବାକୁ ହେବ, ପୁଅ ବିଲାତ ଯିବାକୁ ହେବ ।"

ମାଇପର ଜିଗରରେ ଏବଂ ପୁଅର ଅଳରେ ବାଧ ହୋଇ ସେ ବାପୁଡ଼ା ପାଞ୍ଚ ହଜାର ଟଙ୍କା ପୁଅ ହାତରେ ଦେଲା । କମଳା ନିଜ ପତିର ଅଜଣାରେ ଅଲଙ୍କାର ବନ୍ଧକ ଦେଇ ଏକ ହଜାର ଟଙ୍କା କରଜ କରିଆଣି ପୁଅକୁ ଦେଇ ବୋଇଲା—'ଏବେ ଏତିକି ଟଙ୍କା ନେଇଯାଅ । ଲୋଡ଼ାବେଳେ ଆହୁରି ପଠାଯିବ ।'

ପୂର୍ଣ୍ଣଚନ୍ଦ୍ର ଲଣ୍ଡନ ଯାଇ ମିଡ଼ିଲ ଟେମ୍ପିଲରେ ପୂର୍ଣ୍ଣଚନ୍ଦ୍ର ରାଓ ବୋଲି ନିଜ ନାମ ଲେଖାଇ ପ୍ରବେଶିଲା । ଅତଏବ ସେ ସେଠାରେ ପି. ସି. ରାଓ ନାମରେ ବ୍ୟବହୃତ । ଏଣିକି ଆମ୍ଭମାନେ ମଧ୍ୟ ସେହି ନାମ ବ୍ୟବହାର କରିବା । ବିଲାତରେ ଦୁଷ୍ଟ ସହବାସ ବଶୁ ରାଓର ଆଚରଣ ପରିବର୍ତ୍ତିତ ହେଲା । ସେ ସିଗାରେଟ ପୋଡ଼ାଏ, ମଦ ପିଏ, ବ୍ୟଭିଚାରିଣୀଙ୍କ ସ୍ନେହ ସମ୍ପାଦେ, ପ୍ରାୟଶଃ ପ୍ରତ୍ୟେକ ନିଶା ସିନେମା କିମ୍ବା ନାଟକ ଦେଖିବାକୁ ଯାଏ, ଛୁଟି ଦିନମାନଙ୍କରେ ଦେଶଭ୍ରମଣ କରେ । ଅତଏବ ସେ ବାରଂବାର ଧନ ପ୍ରେରଣ

ନିମିତ୍ତ ବାପଠାକୁ ପତ୍ର ଦେଲା । ବାପ ଆଖିରୁ ଲୁହ ନୁହେଁ — ଲହୁ ଗଡ଼ାଇ
କରଜ କରି ଧନ ପଠାଉଥାଏ । ଶେଷରେ ତାର ସକଳ ଚର ସମ୍ପତ୍ତି
ନିକାଶ ପାଇଁ ସ୍ଥିର ସମ୍ପତ୍ତି ବନ୍ଧକ କରିଦେଲା । କପାଳ ହେଉ ପୁଅ ବାରିଷ୍ଟର
ହୋଇ ଫେରିଆସୁଥିଲା ସମ୍ବାଦ ଅବଗତ ହୋଇ ତାର ମନ ଥୋଡ଼ା ଖୁସି-
ହୋଇଥିଲା । ସେ ପୁତ୍ର ପ୍ରେମବଶ ହୋଇ ସାଲୁର ରେଲଷ୍ଟେସନରେ ନିର୍ଦ୍ଦିଷ୍ଟ
ସମୟରେ ହାଜର ହୋଇଥାନ୍ତେ, ମେଲ ଗାଡ଼ି ଆସି ପହଞ୍ଚିଲା । ନାରାୟଣ ଇଣ୍ଟର
କ୍ଲାସ ଗାଡ଼ିରେ ଏବଂ ସେକେଣ୍ଡ କ୍ଲାସ ଗାଡ଼ିରେ ଖୋଜି ନିଜ ତନୁଜକୁ ନ ଦେଖି
ଚିନ୍ତାନ୍ୱିତ ହୋଇ ଠିଆହୋଇଥାଆନ୍ତେ, ପାଦେ ବୁଟ, ଅଙ୍ଗେ ଓଭର କୋଟ,
ଶିରେ ହ୍ୟାଟ ଧାରଣ କରିଥିଲା ଏକ ବ୍ୟକ୍ତି ଫାଷ୍ଟକ୍ଲାସ ଗାଡ଼ିରୁ ଓହ୍ଲାଇ ପ୍ଲାଟ
ଫାରମରେ ତାର ପୂର୍ବ ପରିଚିତ ଜନୈକ ବ୍ୟକ୍ତି ତୁଲେ କର ଧାରଣ କରି
ଆଙ୍ଗ୍ଲ ଭାଷାରେ ସମ୍ଭାଷଣ କରୁଥିଲା ସମୟରେ ପୋର୍ଟର ଗାଡ଼ିଭିତରୁ ସୁଟ-
କେଶଟିଏ ଆଣି ସେଠାରେ ରଖି ଆପଣାର ହକ ପାଉଣା ପାଇଁ ସଲାମ
କରିଗଲା । ନାରାୟଣ ମଧ୍ୟ ସାହେବ ବୋଲିବା ଶଙ୍କାରେ କିଛି ଦୂର ଘୁଞ୍ଚିଲା ।
କଥୋପକଥନ କରୁଥିଲା ବ୍ୟକ୍ତିଦ୍ୱୟରେ ପୂର୍ବସ୍ଥିତ ବ୍ୟକ୍ତି ଆଗତ ବ୍ୟକ୍ତିକୁ
ଉଦ୍ଦେଶି "ଗୁଡ୍‌ବାଇ ପୂର୍ଣ୍ଣଚନ୍ଦ୍ର" ବୋଲି ଯାନ୍ତେ ଆଗତ ବ୍ୟକ୍ତି ନିଜାତ୍ମଜ ବୋଲି
ତେବେ ଜାଣି ତା କତିକି ନାରାୟଣ ଯାଇ ସୁଟକେଶ ବହନ କଲା । ମୋଟର
ବସରେ ଯିବାକୁ ପୁତ୍ର ଅନିଚ୍ଛୁକ ହେଲା ହେତୁରୁ ଗୋଟାଏ ଭଡ଼ା ମୋଟର
କାରରେ ବାପ ଏବଂ ପୁଅ ବସି ସ୍ୱପୁରେ ପହଞ୍ଚିଲେ ।

ଭାରତ ପ୍ରଥା ଏବଂ ପାଶ୍ଚାତ୍ୟ ପ୍ରଥା ମଧ୍ୟରେ ଅନ୍ତର ବହୁତ । ପ୍ରାୟଶଃ
ବିଂଶନ୍ତ ବର୍ଷ ଅଭ୍ୟସ୍ତ ହୋଇଥିଲା ଚାଲି ଚଳି ତିନିବର୍ଷ ବ୍ୟବଧାନରେ ପୁତ୍ରଠାରୁ
ଦୂର ହୋଇଯାଇ ତାକୁ ପାଶ୍ଚାତ୍ୟ ରୀତି ସମ୍ପୂର୍ଣ୍ଣ ନୂତନ କରିଦେଲା । ଭାରତୀୟ
ଭଙ୍ଗୀରେ ଶାଢ଼ୀ ଏବଂ ଖଦି ପିନ୍ଧିଥିଲା କାରଣରୁ ପର ହେ ନିଜ ଜନନୀ ଏବଂ
ଜନକ ସହିତରେ ଭଲେ କଥୋପକଥନ କଲା ନାହିଁ । ହୀରାମଣିର ବର୍ଣ୍ଣ ପୁଣ୍ଡ୍ରୀକ
ପରି ନୋହି କେତକୀ ପରି ଏବଂ କେଶ ସୁନା, ରୂପା କମ୍ବା ତମ୍ବା ପରି ନୋହି
ନୀଳମଣି ପରି ଦିଶୁଥିଲା, ତା ଦେହରୁ ସାବୁନ ବାସନା ନ ବାସି ହରିଦ୍ରା ଗନ୍ଧ
ପ୍ରସରୁଥିଲା । ତାର ଶିରରେ ଓଢ଼ଣୀ, ନାସାରେ ବସଣି, ଭାଲରେ ସିନ୍ଦୂର ବିନ୍ଦୁ,
ହାତରେ ଶଙ୍ଖା, ପାଦରେ ନୂପୁର, ଅଙ୍ଗରେ ପେଟୀ କୋଟ-ବିହୀନ ହୋଇ
ଶାଢ଼ୀରେ ଆବୃତ । ଅଧିକନ୍ତୁ ସେ ଲଜ୍ଜାନ୍ୱିତା । ଅତଏବ ସେ ପୁତ୍ରର ମନକୁ

ଟାଣିଆଣି ପାରିଲ ନାହିଁ । ବରଂ ମୁକୁନ୍ଦଙ୍କ ମାଳପ ମୁଖକୁ ଚାହିଁଲା ନାହିଁ । କାନ୍ଥ ମାଟି, ଛାମର ଛଣ, ଘର କୁଟୀର, ପୁଣି ଅନ୍ଦୋଳିତ, ଗ୍ରାମ ଛଡ଼ା, ଗ୍ରାମବାସୀ ଅସଭ୍ୟ; ଅତଏବ ଜନକ ସ୍ଥାନ ହୋଇଲେ ହେଁ ସେଠାରେ ସେ ଦୁଇଦିନ ମଧ୍ୟ ରହି ନ ପାରି ମାନ୍ଦ୍ରାଜରେ ବାସ କରି ଓକାଲତି କରିବାକୁ ଉଦ୍ୟତ ହେଲେ; କିନ୍ତୁ ବାଞ୍ଛିତ ଧନ ଜନକ ପୋତାଇ ନ ପାରିଲେ ହେତୁରୁ କେତେ କାଳ ବିଶାଖପାଟଣାରେ ଓକାଲତି କରି ପରେ ମାନ୍ଦ୍ରାଜ ଯିବା ସ୍ଥିର କରି ସହରରୁ ବାହାର ବିଶାଖପାଟଣା ଯାଇ ସମୁଦ୍ର ତୀରର ଗୋଟିଏ ବଙ୍ଗଳାର ଆଗରେ "ସି. ପି. ଟି- ରଓ, ବାରିଷ୍ଟର" ବୋଲି ଲିଖିତ ହୋଇଥିବା ଗୋଟିଏ ପଟା ଲମ୍ବାଇ ତହିଁ ବାସ କଲେ । ସେ ବଙ୍ଗଳାର ମାସିକ ଭଡ଼ା ପଚାଶ ଟଙ୍କା । ରଓର ଓକାଲତି ନୂଆ ହୋଇଥିଲେ ହେଁ ଉପାଧି ବଳରୁ ପଇସା ଉପାର୍ଜନ ମନ୍ଦ ନୋହି ଆଶାଜନକ ହୋଇଥିଲା । ସେ ଘରକୁ ଚିଠି ପଠାଏ ନାହିଁ କିମ୍ବା ଘରୁ ପ୍ରେରିତ ହେଲେ ପତ୍ରର ପ୍ରତ୍ୟୁତ୍ତର ଲେଖେ ନାହିଁ ।

ଚେଟ୍ଟି ମହାଜନେ ନାରାୟଣଙ୍କ ସକଳ ଚର ସ୍ଥିର ସମ୍ପତ୍ତି ବିକାଇ ନିଜ ଋଣ ଧନ ଅସୁଲ କରିନେଲେ । ସେ ସମସ୍ତ ସମାଚାର ଅବଗତ ହୋଇ ସୁଦ୍ଧା ରଓ ଏକ ପଇସାଟିଏ ମଧ୍ୟ ଘରକୁ ପଠାଇଲେ ନାହିଁ । ଅଭିମାନୀ ନାରାୟଣ ବାସବାସହୀନ ହୋଇ ଦାମ୍ଭିକ ହୋଇଥିଲ ଗ୍ରାମରେ ରହିବା ଅନୁଚିତ ବୋଲି ଭାବି ଲକ୍ଷ୍ମୀପୁର ତେଜ ଚେଲ୍ଲଙ୍ଗ ବେଣୁଙ୍କୁ ଯାଇ ଏକ ଗ୍ରାମୋପାନ୍ତରେ ଗୋଟିଏ ପତରକୁଡ଼ିଆ ତୋଳି ତହିଁ ଜାୟା ଏବଂ ପୁତ୍ରବଧୂ ସହିତରେ ରହି କୁଲି ହୋଇ ଜୀବନ ଯାପନ କଲେ । ପୁଅଠାରେ ଆଶା ଭରସା ସ୍ଥାପିଥିଲେ । କମଳା ତାର ଉପେକ୍ଷାରୁ, ଘରର ଗଞ୍ଜଣାରୁ ଏବଂ ଦରିଦ୍ରତାରୁ ଖିନ୍ନା ହେଲା । ହୀରାମଣିର ଦୁଃଖ କଥନାତୀତ, ଅନୁଭବୈକବେଦ୍ୟ ମାତ୍ର । କଷ୍ଟୀ ସୁଖୀ ହେବା ସତ୍ୟ; କିନ୍ତୁ ସୁଖୀ କଷ୍ଟୀ ହେବା ଦୁଃସହ ।

ଏକ ଦିନେ କମଳା ହୀରାମଣିକି କୋଳରେ ବସାଇ କହିଲା, "ମା, ତୋ ଭାଗ୍ୟରେ ପତିସୁଖ ଲାଭ ତ ଲେଖାଯାଇ ନାହିଁ, ତୁ ନିଜେ ଦାରିଦ୍ର୍ୟ କଷ୍ଟ ମଧ୍ୟ ଭୁଞ୍ଜୁଛି କାହିଁକି ? ମୋ କଥା ଶୁଣେ । ମା ଘରକୁ ଯା । ସେଠାରେ ଭାତଗୁଣ୍ଡାଏ ଏବଂ ଖଦି ଖଣ୍ଡିଏ ହେଲେ ପାଇବୁ ।"

ଏତେ ଶୁଣି ହୀରାମଣି ଶୋକାକୁଳା ହୋଇ ଶାଶୁ ପଦଯୁଗ ଧରି ବୋଇଲା—"ମା, ସେପରି କହ ନାହିଁ । ତୁମ ପୁଅ ବିଲାତରେ ଥିଲାବେଳେ ମୁଁ ମାଆ ଘରେ ତିନିବର୍ଷ କାଳ କାଟିଲି । ତାହା ନିତାନ୍ତ ନିନ୍ଦ୍ୟ । ମାଆ ଘରେ ସଧବାର ସ୍ଥାନ ନାହିଁ । ମୋ କପାଳରେ ପତିସେବା କରିବା ଲେଖାଯାଇ ନାହିଁ । ତାହା ବୋଲି ଗୁରୁଜନ ସେବକ ଛାଡ଼ିବି କାହିଁକି ? "ମୋର ମାଆ ଘରର କ୍ଷୀରି ଖେଚଡ଼ିଠାରୁ ଶାଶୁଘରର ଜାଉ ପେଜ ବଡ଼ ମଧୁର, ସେଠା ପାଟପଟନୀ ଠାରୁ, ଏଠା ଚିରା ଲେଙ୍ଗୁଡ଼ା ବେଶି ସୁନ୍ଦର । ମାଆ ଘରେ ରହି ନିନ୍ଦିତା ହୋଇପାରିବି ନାହିଁ । ମା, ମୋତେ ତୁମ ପାଖରେ ମାସ ରଖ, ତୁମ ବେନିଙ୍କ ସେବା କରି ଧନ ନେବି, ସେତିକି ମୋତେ ଅଣ୍ଟିଇ ।"

ତାହା ଶୁଣି କମଳା ଶୋକଭରେ ବୋହୂକୁ କୁଣ୍ଢେଇ କହିଲା—'ମା, ତୋ କଷ୍ଟ ଦେଖି ନ ପାରି ସେପରି ବୋଇଲି । ପୁଅ ବୋଇଲେ ତୁ, ବୋହୂ ବୋଇଲେ ତୁ । ତୋତେ ଛାଡ଼ି ପାରିବି ନାହିଁ । ତୁ ଆମ ପାଖେ ଏକା ଥା ।' ପାଠକେ ହୀରାମଣିର ଚାଲିଚଳଣି ପୂର୍ବେ ରାଜାତ୍ମଜା ହୋଇ ସୁଦ୍ଧା ବନବାସ କ୍ଲେଶ ଭୁଞ୍ଜି ଶାଶୁଶ୍ୱଶୁରଙ୍କ ସେବା କରୁଥିଲା ସାବିତ୍ରୀ ଚରିତକୁ ଜ୍ଞାପନ କରୁଏ ନାହିଁ କି ?

ଅନ୍ୟ ଏକଦିନେ କମଳା ନିଜ ନାଥଙ୍କ ଉଦ୍ଦେଶି ବୋଇଲା—'ଆହେ, ତୁମେ ସିନା ଅଭିମାନୀ ହୋଇ ମୁହଁଠାକୁ ଯାଉନାହଁ । ମୋର ତ ଅଭିମାନ ନାହିଁ, ମୁଁ ଥରେ ଯାଇ ତାକୁ ଦେଖି ଆସିବି । ସେ ସିନା ଏବେ ପାରିଗ ହୋଇ ମୋତେ ଦୂର କଲା, ପାଇଲେ ପେଟ ତାକୁ ଦୂର କରିପାରିବ କି ? ଏଣୁ ମୋତେ ଅନୁମତି ଦିଅ ।'

ଏତିକି ଶୁଣିଲା ମାତ୍ର କ୍ରୋଧାରୁଣିତଲୋଚନ ହୋଇ ନାରାୟଣ ଉଚ୍ଚେ ଭାଷିଲା—'କିସ, ସେ କୁଳାଙ୍ଗାରକୁ ଦେଖିବାକୁ ଯିବୁ ? ତୋତେ ଲାଜ ମାତ୍ର ନାହିଁ ? ମୋ ପ୍ରାଣ ଖାଇ ସର୍ବସ୍ୱ ସେ ଦ୍ରୋହୀ ପାଇଁ ଧ୍ୱଂସ କରିଛିଲୁ କୁଳଅଣୀ ହେଲୁ । କୋଡରେ ଥିବାଯାଏ ପୁତ୍ର, ଥୋଡ଼ ବଢ଼ିଲେ ସେ ଅମିତ୍ର । ଏହି ଲୋକୋକ୍ତି ଆଜୁର ଜଣାଯାଇ ନାହିଁ କି ? ସେ ତୋତେ ଦାସେର ଦେଇ ଥିଲେହେଁ, ତୁ ତାକୁ ଯାଇ ହାତ ପାତିବାକୁ ପାଞ୍ଚୁ । ମୁଁ ଦାରିଦ୍ର୍ୟ କଷ୍ଟକୁ ସହିଲି; କିନ୍ତୁ ଅପମାନକୁ ସହିପାରିବି ନାହିଁ । ଯିବୁ ତ ଯା ସେ ବିଶ୍ୱାସଘାତୁକ

ତୋତେ ଆଦର କରୁଥିଲେ ଦେଲେ ଆଣି ଖା; ମାତ୍ର ତାହାଙ୍କଦ୍ୱାରା ଉତ୍ତରସ୍ବତା ହୋଇ ଆସିଲେ, ତୋର ଏଠାରେ ଆଉ ସ୍ଥାନ ଥିବ ନାହିଁ । ଖବରଦାର !'

ପୁଅଠାରେ ଥିଲା ମମତାରୁ ଏବଂ ଭରସାରୁ କମଳା ଗିରସ୍ତର ଘର ଠେଲିଦେଇ ବଶାଙ୍କଠେଣେ ଯାଇ ବଡ଼ର ଗୃହଦ୍ୱାରରେ ହାଜର ହୋଇ ଦ୍ୱାର-ପାଳ ଦ୍ୱାରା ନିଜାଗମନବାର୍ତ୍ତା ଭିତରକୁ ପଠାଇଲେ । ଦ୍ୱାରୀ ଫେରି ଆସି 'ବାବୁ କାର୍ଯ୍ୟରେ ବ୍ୟସ୍ତ ହୋଇ ଅଛନ୍ତି, ତୁମେ କିଛିକାଳ ଏଠାରେ ବସି ଥାଅ' ବୋଲି କହନ୍ତେ ସେ ମର୍ଦ୍ଦିତପୁଚ୍ଛ ଫଣିନୀ ପରିକ୍ଷୁବ୍ଧା ହୋଇ, "କଣ, ତାର ଆଖି ଫୁଟିଛି ଏବେ ତାଳୁରେ ଚଢ଼ିଲା ! ମାଆକୁ ବାହାରେ ବସାଇ ଘରେ କାର୍ଯ୍ୟ କରୁଛି ? ଦ୍ୱାର ବାରଣ ମାନେ କି ?" ବୋଲି ଜବରଦସ୍ତରେ ଭିତରେ ପଶି ପୁଅର ଆଗରେ ଉଭା ହୋଇ ବୋଇଲେ—"ପୂର୍ଣ୍ଣି, ତୁ ଏବେ କେଡେ ବଡ ହେଲୁ ରେ !!"

ଏତିକି ଶୁଣି ରାଓ ଦୁଇ ଆଖି ତରାଟି ଚାହିଁ ବୋଇଲେ—"ପୂର୍ଣ୍ଣଚନ୍ଦ୍ର ରାଓ ମହାଶୟ" କିମ୍ବା 'ପୂର୍ଣ୍ଣଚନ୍ଦ୍ର ବାବୁ' ବୋଲିପାରୁ ନାହୁଁ ? ବାରିଷ୍ଟର ମହାଶୟଙ୍କୁ 'ପୂର୍ଣ୍ଣି' ବୋଲି ଡାକୁଛୁ ? ଅନୁଜ୍ଞା ବିନା ଭିତରକୁ ଆସିଛୁ ?"

ଏତିକି ଶୁଣିଲା ମାତ୍ର କମଳା କୁପିତା ହୋଇ ଉଚ୍ଚସ୍ୱରରେ ବୋଇଲା—"ଆରେ ମୂର୍ଖ, ତୁ ଆନ ଜନଙ୍କର 'ମହାଶୟ' 'ବାବୁ' ଆଉ ବାରିଷ୍ଟର'; କିନ୍ତୁ ମାବାପାଙ୍କର ନୋହୁ । ତୁ ମଦାନ୍ଧ ହୋଇ ଭଲ ମନ୍ଦ ଜାଣିପାରୁ ନାହୁଁ । ତୋତେ ପାଇ ସବୁ ସମ୍ପତ୍ତି ହରାଇ କଷ୍ଟ ସହି ତୋତେ ମଣିଷ କଲି ମାବାପଙ୍କୁ ପାସୋରିଲୁ । ହାତ ଧରି ବାହାହେଲ ମାଇପକୁ ଛୁଡ଼ିଲୁ । ତୁ ମୋ ପୁଅ ନୋହୁ, ବିଶ୍ୱାସଘାତକ । ତୋଠାରୁ କୁକୁର ଅଧିକ । ଧର୍ମ ଯଦି ଥାଏ, ତୋ ଗରବ ଗୁଣ୍ଡ ହେବ. ପାପ ଫଳ ଅବଶ୍ୟ ଭୁଞ୍ଜିବୁ । ଛି, ତୋ ମୁହଁ ଆଉ ଦେଖିବି ନାହିଁ । ଗିରସ୍ତଙ୍କ ଘର ନ ମାନି ଏଠାକୁ ଆସି ବେଶି ଖୁସି ହେଲି, ତାର ଶାସ୍ତି ପାଇଲି ।" ଏତେ ବୋଲି ସେ ସେଠାରୁ ବାହାରିଗଲା; ମାତ୍ର ସ୍ୱଗୃହକୁ ଯାଇ ନାହିଁ । ସେ କେଉଁଠାକୁ ଗଲା କିମ୍ବା କ'ଣ ହେଲା, ସେ ସମ୍ବାଦ ଜଗତ ଏଯାଏ ଜାଣିପାରି ନାହିଁ । ରାଓ ଜନନୀ ବଚନ ଶୁଣି ମନେ ହସି ନିଜ କାର୍ଯ୍ୟରେ ରତ ହେଲା ।

ପ୍ରପଞ୍ଚର ପ୍ରତ୍ୟେକ ସ୍ୱାର୍ଥ ଦେଖୁଥିବା ଜଣ ମାନବର ଦଶା ମଧ୍ୟ ସେହିପରି। ଦୁର୍ଦ୍ଦଶା ଘଟିବା କାଳରେ ସୁଧୀର ମଧ୍ୟ ବୁଦ୍ଧିଭ୍ରଂଶ ଘଟେ। ଦଶାନନ ଜନକସୁତାସକ୍ତ, ନଳ ଏବଂ ଧର୍ମଜ ଦ୍ୟୂତାନୁରକ୍ତ, ଦଶରଥ ଏବଂ ପରୀକ୍ଷିତ ମୃଗୟାଭିଳାଷୀ, ଶିଶୁପାଳ ଦୁର୍ଭାଷାଭାଷୀ, ଯାଦବେ ମଦ୍ୟପାନରତ, ଦୁର୍ଯ୍ୟୋଧନ ଦାୟୁଦ୍ରନୁବନ୍ଧ। ତେବେ ସହଜ ନିମିତ୍ତ କେତୋଟି ମୋଟର କାର ବଗାନପକ୍ଷଙ୍କୁ ଅଣାତ। ତାଙ୍କୋଳଯାଏ ମୋଟର ବାଇସିକଲରେ ଗମନାଗମନ କରୁଥିଲା ସେଓ ଠାନି କରି ମୋଟର କାରଟିଏ କିଣିଲା। ମନୁଷ୍ୟ ସମାଜ ନୂତନ ସ୍ୱାର୍ଥପ୍ରିୟ ଥିଲା। ସେ ବେଶ୍ୟା ସମ୍ଭୋଗ କଲା, ମଦ୍ୟପାନ ବଢ଼ାଇଲା, କାଳକ୍ଷେପ ନିମିତ୍ତ ଜୁଆ ଖେଳକୁ ଅବଲମ୍ବିଲା। କଥିତ କର୍ମାସକ୍ତି-ବଶରୁ ତାର କର୍ତ୍ତବ୍ୟ କାର୍ଯ୍ୟରେ ତ୍ରୁଟି ଘଟି ଆୟ କମିଲା ଏବଂ ବ୍ୟୟ ବଢ଼ିଲା। ଅତଏବ ସେ କୃତ୍ରିମ ଲେଖନାଦି କୁତ୍ସିତ କର୍ମମାନ କରିବାକୁ ବାଧ୍ୟହେଲା। ପାପ ସର୍ବଦା ଲୁଚିରହେ ନାହିଁ। ତାର ପାପାଚରଣ ପ୍ରକଟିତ ହୁଅନ୍ତେ ସେ କେତେ କାଳଯାଏ ନ୍ୟାୟ ସ୍ଥାନ ପ୍ରବେଶ ସୁଖରୁ ତ୍ୟକ୍ତ ହେଲା; ମଧ୍ୟ ନିଃସ୍ୱ ହୋଇ ଦେଉଳିଆ ହେଲା। ଦୂରବସ୍ଥା ଏକଲା ଆସେ ନାହିଁ। ସେଓ ଆଧିବ୍ୟାଧି-ଗ୍ରସ୍ତ ହୋଇ ଜେନେରଲ ହାସ୍ପିଟାଲର ଦରିଦ୍ର ରୋଗୀଙ୍କ ପାର୍ଶ୍ୱରେ ଏକାକୀ ପଡ଼ିରହିଲା। ତୃଷା କଲେ ତା ତୁଣ୍ଡକୁ ପାଣି ଟୋପାଏ ମଧ୍ୟ ମିଳେନାହିଁ। ଜନନୀର ଲାଳନ ପାଳନ ଏବଂ ନିଜର ଉଚ୍ଛୃଙ୍ଖଳ ସ୍ମୃତି ହୁଅନ୍ତେ, ତା ଚିତ୍ତରେ ପ୍ରଭବିଲା ପଶ୍ଚାତ୍ତାପ ଆଧିବ୍ୟାଧି ସଙ୍ଗରେ ମିଶି ପୀଡ଼ା ବଢ଼ାଇଲା।

ଅନ୍ଦାଜ ଏକବର୍ଷ ଅତିକ୍ରମ କଲେହେଁ ଶାଶୁ ଖବର ଅଗୋଚର ହେଲା ହେତୁରୁ ସ୍ୱର୍ଣ୍ଣମଣି ଦୁଃଖିନୀ ହୋଇ ତଦନୁସନ୍ଧାନ ନିମିତ୍ତ ନିର୍ଗମିବାକୁ ଅନୁରୋଧ କଲେ; ନାରାୟଣ ବାଧ୍ୟ ହୋଇ ବୋହୂ ସଙ୍ଗରେ ବିଶାଖପଟ୍ଟଣରେ ପ୍ରବେଶିଲା। ସେଠାରେ ଯେତେ ଭଙ୍ଗୀରେ ଅନ୍ୱେଷଣ କଲେହେଁ, କମଳାର ବୃତ୍ତାନ୍ତ ବିଦିତ ହେଲା ନାହିଁ; କିନ୍ତୁ ସେଓର ଅବସ୍ଥା ଜଣାଗଲା। ତାକୁ ଜାଣିଲା କ୍ଷଣି ସ୍ୱର୍ଣ୍ଣମଣି ଅଧୀର ହୋଇ ସହସା ହାସ୍ପିଟାଲକୁ ଯିବା ପାଇଁ ଶ୍ୱଶୁରଙ୍କୁ ଅନୁରୋଧ କଲା। ତଥାପି ନାରାୟଣ ନନ୍ଦନବଦନ ବିଲୋକନ କରିବାକୁ ଅସମ୍ମତ ହେଲା; ମାତ୍ର ଯିବା ପାଇଁ ବଧୂକୁ ଅନୁମତି ଦେଲା। ସ୍ୱର୍ଣ୍ଣମଣି ହାସ୍ପିଟାଲକୁ ଯାଇ ବହୁବିଧ ଯତ୍ନ କରି ସେଓର ଖଟ ନିକଟରେ ଉପସ୍ଥିତା ହୋଇ ସୁଦ୍ଧା କଙ୍କାଳାକୃତି ଧାରଣ କରିଥିଲା କାରଣରୁ ତାକୁ ଚିହ୍ନି ପାରିଲା

ନାହିଁ; କିନ୍ତୁ ସେ ନିଜ ତାଙ୍କୁ ଦେଖି କ୍ରନ୍ଦନ କରି କହିଲେ—"ଏ ଦୋଷୀର ଦୋଷ କ୍ଷମା କଲୁ କି ? ଏ କୁବୁଦ୍ଧିଯୋଗେ ତୋ କୂଳ ବୁଡ଼ାଇଲି କି ?"

ତାହା ଶୁଣି ସାଶ୍ରୁନୟନା ହୀରାମଣି ଚେଡେଦେ ମୃଦୁସ୍ୱରେ ବୋଇଲା—"ତୁମେ ବ୍ୟଥିତ ହେବା ଅନୁଚିତ। ତୁମର ଦୋଷ କିଛି ହିଁ ନାହିଁ। କଳି ପ୍ରଭାବରୁ ନଳଙ୍କ ମତି ବଦଳି ଯାଇଥିଲା। ସେ ଦୁର୍ଦ୍ଦଶାରେ ତୁମ ବୁଦ୍ଧି ବଦଳି ଥିଲା ଭଲେ ଭାବିଲେ ମଣିଷ ସ୍ୱତନ୍ତ୍ର ନୁହେ। ଦୁଃଖପୁର ମଧ୍ୟ ଅନ୍ତ ଅଛି। ଜଗଦୀଶ କୃପାରୁ ଆମ୍ଭ ଦୁର୍ଦ୍ଦଶା ଦୂର ହେବ। ବିଷାଦକୁ ତେଜ, ପ୍ରମୋଦକୁ ଭଜ।" ତା ପରେ ସେଓ ସ୍ତ୍ରୀମୁଖରୁ ନିଜ ଜନକ ଜନନୀଙ୍କ ଗତି ସ୍ଥିତି ଅବଗତ କରି ଦୁଃଖିତ ହେଲା।

ହୀରାମଣିର ଶୁଶ୍ରୂଷାବଶୁଁ ଏବଂ ଡାକ୍ତରଙ୍କ ଚିକିତ୍ସାବଶୁଁ ସେଓ କ୍ରମ କ୍ରମରେ ଆରୋଗ୍ୟ ଲାଭ କରି ହସ୍ପିଟାଲରୁ ମୁକ୍ତ ହୋଇଯାଇ ପିତାର ପାଦେ ପଡ଼ି କ୍ଷମା ପ୍ରାର୍ଥନା କଲା। ସଜଳ ଲୋଚନେ ମାଧବ ନନ୍ଦନକୁ ଆଲିଙ୍ଗନ କରି ପ୍ରବୋଧିଲା। ସେଓ ପୂର୍ବାଭ୍ୟସ୍ତ ସମସ୍ତ ଦୁର୍ଗୁଣ ପରିତ୍ୟାଗ କରି ପୁନଶ୍ଚ ଆଇନ ବ୍ୟବସାୟ ଆରମ୍ଭିଲା। ତାହା କ୍ରମେ ବର୍ଦ୍ଧିତ ହେଲା। ସେଓର କମଳାକାନ୍ତ ନାମକ ବାଳକଟିଏ ଜନ୍ମି ଜନନୀ ଜନକଙ୍କୁ ଏବଂ ପିତାମହଙ୍କୁ ଆନନ୍ଦାବ୍ଧିରେ ଭସାଇଅଛି। ଅଦ୍ୟ ସେଓର କୌଣସି ଅଭାବ ନାହିଁ। ତଥାପି ମାତା ସ୍ମୃତା ହେବା ସମୟରେ ମାତ୍ର ତାର ଆନନ୍ଦ କିଞ୍ଚିନ୍ମଳିନ ହୁଏ।

ଗଳ୍ପର "ଗୃହଲକ୍ଷ୍ମୀ" ନାମ ସାର୍ଥକ ହୋଇଅଛି। ଏହା ଖାଲି ଗଳ୍ପ ନୁହେଁ—ଆଧୁନିକ ସମୟର ଖଣ୍ଡିଏ ଚିତ୍ର। ଭାଷାଶିଳ୍ପୀ ରାଜକବି ନିପୁଣ ହସ୍ତରେ ଗୋଟିଏ ମଧ୍ୟବିତ୍ତ ଗୃହସ୍ଥର ଚିତ୍ର ସୁନ୍ଦର ରୂପେ ଅଙ୍କନ କରିଅଛନ୍ତି। ଗଳ୍ପଟି ସୁଚିନ୍ତିତ ଏବଂ ସୁସଜ୍ଜିତ। ଏଥିରେ ସୁଖ, ଦୁଃଖ, ବିଚ୍ଛେଦ, ମିଳନ, ଅନୁତାପ, କ୍ଷମା, ଭ୍ରମ, ସଂଶୋଧନ, ଶିକ୍ଷା, ସଂସ୍କାର, ଅଭିମାନ, ଉପଦେଶ, ପତନ, ଉତ୍ଥାନ ସବୁ ଏକାଠାରେ ବର୍ତ୍ତମାନ। ଯାହା ମୁହଁରୁ ଯେଉଁପରି ଭାଷା ବାହାରିବା ସ୍ୱାଭାବିକ; ଲେଖକ ତାହା ମୁହଁରୁ ଠିକ୍ ସେହିପରି କଥା ବାହାର କରିଅଛନ୍ତି। ସାଧାରଣତଃ ପୁରୁଷର ଭାଷା କଠୋର ଏବଂ ସ୍ତ୍ରୀର ଭାଷା କୋମଳ। ଗଳ୍ପରେ ସେହି ସ୍ୱାଭାବିକତା ରକ୍ଷିତ ହୋଇଅଛି। "ଓକିଲର ପ୍ରାପ୍ୟତଃ ଏକମାତ୍ର ତୁମ୍ଭେ; କିନ୍ତୁ ଓକିଲର ଟଙ୍କା ସେ ଯୋଗ ତୁମ୍ଭେ। ଅତଏବ ମୁଁ ଓକିଲ

ହେବ ନାହିଁ ଲଣ୍ଡନରେ ଆଇନ ପଢି ବାରିଷ୍ଟର ହେବ । ବାରିଷ୍ଟର ହେବା କେତେକ ସମୟ ପରେ ଜିଲ୍ଲା ଜଜ୍ କାର୍ଯ୍ୟ ପାଇବ ।" ଏହି ଆଶା ସ୍ୱପ୍ନ ହେଲେହେଁ ପାଠ ମଡ଼ୁଁ ପଡ଼ୁଁ ଓଡ଼ିଆ ଯୁବକର ଏଭଳି ଭବିଷ୍ୟତ ଉଚ୍ଚାକାଙ୍କ୍ଷା ବାସ୍ତବରେ ଯୁବଜନୋଚିତ ନୁହେଁ କି ? ଉଚ୍ଚଲକ୍ଷ୍ୟ, ଉଚ୍ଚାଦର୍ଶ ଯେଉଁ ଜୀବନରେ ନ ଥାଏ, ସେ ଜୀବନ ଅସାଡ଼ ଜୀବନ । ପୁତ୍ରର ଏ କଥା ଶୁଣି ପିତା କହିଲେ, "ଏବେ ଏ ଦେଶରେ ଯେତେ ଲୋକ ବାରିଷ୍ଟର ହୋଇଅଛନ୍ତି, ସେମାନେ ସମସ୍ତେ ତ ଜଜ୍ ହୋଇ ନାହାନ୍ତି ; ତୁ ଆଜି ବିଲାତ ଯାଇ କାଲିକି ବାରିଷ୍ଟର ହୋଇ ଫେରିବା ମାତ୍ରେ ଜଜ୍ କାର୍ଯ୍ୟ ପାଇପାରିବୁ ବୋଲି ବୋଲିଯାଇ ନ ପାରେ ।" ଅଳ୍ପ ଶିକ୍ଷିତ ପିତାର ଏ ଉକ୍ତି କିଞ୍ଚିତ୍ ବିଦ୍ରୁପାତ୍ମକ ହେଲେ ସୁଦ୍ଧା ଦେଶକାଳର ଉପଯୋଗୀ । ଗୃହିଣୀ କମଳା ସ୍ୱାମୀଙ୍କୁ କହିଲେ, "ଆହେ, ତୁମେ ଧନଲୋଭରୁ ଗୋଟିଏ ମାତ୍ରର ପୁଅକୁ ଭଲ ପାଠ ପଢ଼ାଇ ବଡ଼ କରିବାକୁ ମଙ୍ଗୁ ନାହଁ । ଧନ ଅରଜିରଖି ଭଲ କାମରେ ଖରଚ ନ କଲେ ସେ ତ ସଙ୍ଗରେ ଯାଏ ନାହିଁ । ଭଲ କାମରେ ଖରଚ ହେବ ତ ହେଉ, ତା ପାଇଁ ଭାବନା କାହିଁକି । କାଲିକି ପୁଅ ଜଜ୍ ହେଲେ ସେ କଅଣ ଧନ ଅରଜିବ ନାହିଁ । ଜନ ଧନକୁ ନା ଧନ ଜନକୁ ଅରଜେ ?" ଯେଉଁ ସ୍ତ୍ରୀ ସ୍ୱାମୀକୁ ଏଭଳି ସଦୁପଦେଶ ଦେଇପାରେ, ସେ ପାଠ ପଢ଼ି ନ ଥିଲେ ସୁଦ୍ଧା ଶିକ୍ଷିତାର ଗୁରୁଶ୍ରେଣୀୟା । ବିଶେଷତଃ କମଳାର ଶେଷ କଥାଟି ଖୁବ୍ ଉଚ୍ଚ ହୃଦୟର କଥା । ସ୍ତ୍ରୀସୁଲଭ ସରଳ ପ୍ରାଣର ଏ ଧରଣ ଉକ୍ତି ମଧ୍ୟରେ ଗୋଟାଏ ଗମ୍ଭୀର ସତ୍ୟ ନିହିତ ଅଛି । ସାହିତ୍ୟ ସମ୍ରାଟ କମଳାର ଚରିତ୍ରକୁ ଏହିପରି ଦୃଷ୍ଟାନ୍ତରେ ଅଳଙ୍କୃତ କରିଅଛନ୍ତି । ନାରୀ ଚରିତ୍ରକୁ ଯେଉଁ ପରି ଭାବରେ ଚିତ୍ର କଲେ ସୁନ୍ଦର, ସେ ଠିକ୍ ସେହିପରି ଭାବରେ ଚିତ୍ର କରିଅଛନ୍ତି—ଏହା ସାମାନ୍ୟ ଦକ୍ଷତାର ପରିଚୟକ ନୁହେଁ ।

ପୁତ୍ରବଧୂ ହୀରାମଣିର ଚରିତ୍ରକୁ ମଧ୍ୟ ଲେଖକ ହୀରା ମଣିରେ ମଣ୍ଡିତ କରିଅଛନ୍ତି । ପୁତ୍ର ପୂର୍ଣ୍ଣଚନ୍ଦ୍ର ବାରିଷ୍ଟରୀ ପାସ କରି ବିଲାତରୁ ଫେରିଆସି ମିଷ୍ଟର ପି. ସି. ରାଓ ବାରିଷ୍ଟର ସାଇନ୍‌ବୋର୍ଡ ବାନ୍ଧି ବ୍ୟବସାୟ ଆରମ୍ଭ କଲା । ସେ ଉଚ୍ଚ ଉପାଧିରେ ମଣ୍ଡିତ ହୋଇ ଉଚ୍ଚ ହୃଦୟର ପରିଚୟ ମଧ୍ୟ ଦେଲା । ଘୃଣାରେ ବୃଦ୍ଧ ପିତାମାତା ଓ ସ୍ତ୍ରୀକୁ ପରିତ୍ୟାଗ କରି ସେ ସ୍ୱତନ୍ତ୍ର ଜୀବ ହୋଇ ରହିଲା । ବୃଦ୍ଧ ପିତାମାତା ଏବଂ ବଧୂ ହୀରାମଣିର ଦୁଃଖ ଗାଆନ୍ତି ଗାଇ ସରିଲା ନାହିଁ । ଶାଶୁ ହୀରାମଣିକୁ ବାପ ଘରକୁ ଯାଇ ସେଠାରେ ସୁଖରେ ରହିବା ପାଇଁ

କହିବାରୁ ହୀରାମଣି ବ୍ୟଥିତ ହୋଇ ସଜଳନେତ୍ରରେ କହିଲା "ମା, ସେପରି କହ ନାହିଁ । × × × × × ମାଆ ଘରର ଖିରି ଖେଚେଡ଼ିଠାରୁ ଶାଶୁ ଘରର ନାଡ଼ୁ ପେଜ ବଡ଼ ମଧୁର । ସେଠା ଦାଠ ଦମ୍ପତିଠାରୁ ଏଠା ଚଟିଲେଙ୍ଗଡ଼ା ବେଶି ସୁନ୍ଦର । ମାଆ ଘରେ ବନ୍ଦିତା ହୋଇପାରିବ ନାହିଁ । ମାଆ, ମୋତେ ତୁମ ପାଖରେ ରଖ ମାନ, ତୁମ ଦୁହିଁଙ୍କ ସେବା କରି ଧନ ନେବ ।" ହୀରାମଣିର ଏ ଉକ୍ତି ସାଧ୍ୱୀ ହିନ୍ଦୁ କୁଳବଧୂର ଉପଯୁକ୍ତ । ଏଭଳି ସ୍ୱାର୍ଥତ୍ୟାଗ, ଗୁରୁଜନସେବାରେ ଆତ୍ମଦାନବ୍ରତ କେତେଜଣ ତରୁଣୀ ଧାରଣା କରି ଦାରିଦ୍ର୍ୟ, ଦୁଃଖ ସ୍ୱଇଚ୍ଛାରେ ବରଣ କରିବାକୁ ସମର୍ଥ ହେବ । ଆଉ କେହି ନ ହେଉ ପଛେ; ମାତ୍ର ହୀରାମଣି ହୋଇପାରେ । ଯେ ହେତୁ ସେ ଯେ ହୀରାମଣି, ତାହାର ଏ ନାମ ସାର୍ଥକ ।

ବାରିଷ୍ଟର ମିଷ୍ଟର ପି. ସି. ରାଓଙ୍କର ରୋଜଗାର ବୃଦ୍ଧି ସଙ୍ଗେ ସଙ୍ଗେ ଆଧ୍ୟାତ୍ମିକ ଉନ୍ନତି ମଧ୍ୟ ବଢ଼ି ଉଠିଲା । ସେ ପଞ୍ଚମକାରର ଉପାସକ ହେଲେ । ତାଙ୍କର ଅଖାଦ୍ୟ ଅପେୟ ଏବଂ ଅକରଣୀ କିଛି ରହିଲା ନାହିଁ । ସେହି ସୁଚେ ଫଳରେ ସେ ହାସ୍ପିଟାଲର ରୋଗଶଯ୍ୟାରେ ଯାଇ ଶୋଇଲେ । ପତିପ୍ରାଣା ହୀରାମଣି ସେଠାରେ ଉପସ୍ଥିତ ହୋଇ ତାଙ୍କର ସେବା ଶୁଶ୍ରୂଷା କରିବାକୁ ଲାଗିଲା । ଗୁଣଧର ସ୍ୱାମୀଙ୍କ ହୃଦୟରେ ବେଳେବେଳେ ଅନୁତାପ ଜାଗ୍ରତ କରୁଥିଲା । ସେ କରୁଣ ସ୍ୱରରେ ଗଦ୍‌ଗଦ କଣ୍ଠରେ କହନ୍ତି—"ଏ ଦୋଷୀର ଦୋଷ କ୍ଷମା କଲୁ କି ? କୃତଘ୍ନଠାରେ ତୋ କୃପା ପ୍ରସରିଲା କି ?" ଏ ଉକ୍ତି ତାଙ୍କ ସ୍ୱକୃତ ପାପର କଥିତ ପ୍ରାୟଶ୍ଚିତ୍ତ । ବାସ୍ତବରେ ଅନୁତାପ ହିଁ ସର୍ବବିଧ ପାପର ସର୍ବଶ୍ରେଷ୍ଠ ପ୍ରାୟଶ୍ଚିତ୍ତ ସିନା । ସ୍ୱର୍ଣ୍ଣଧେନୁ ଦାନରେ ଯେଉଁ ପାପ କ୍ଷୟ ହୁଏ ନାହିଁ, ଏକା ଅନୁତାପରେ ତାହା କ୍ଷୟ ହୁଏ । ଅନୁତାପ କଲେ ଫଳ ହୁଏ ନାହିଁ, ତହିଁ ସଙ୍ଗେ ସଙ୍ଗେ ପାପନିବୃତ୍ତିର ଦୃଢ଼ସଙ୍କଳ୍ପ କରି ପ୍ରାଣ ପଣରେ ତାହା ପାଳନ କରିବା ଉଚିତ । ବାରିଷ୍ଟରଙ୍କର ପରବର୍ତ୍ତୀ ଜୀବନରେ ସେହିପରି ଦୃଢ଼ ସଙ୍କଳ୍ପର ପ୍ରମାଣ ମିଳେ ।

ଏହା ଶୁଣି ନାରୀ ହୀରାମଣି ପତିପାଦ ଧରି ସାଶ୍ରୁନେତ୍ରରେ ତାଙ୍କୁ ଯେଉଁ ଆଶ୍ୱାସନା ଦେଇଥିଲା ସେଥିରୁ ତାହାର ଧର୍ମ ବିଶ୍ୱାସର ଦୃଢ଼ତା ସୁନ୍ଦର ରୂପେ ଫୁଟି ଉଠୁଅଛି । ସେ କହିଲା—"ତୁମ୍ଭେ ବ୍ୟଥିତ ହେବା ଅନୁଚିତ । ତୁମ୍ଭର ଦୋଷ କିଛିହିଁ ନାହିଁ । କଳି ପ୍ରଭାବରୁ ନଳଙ୍କ ମତି ବଦଳି ଯାଇଥିଲା । ପରି

ଦୁର୍ଦ୍ଦଶା ବଶୁଁ ତୁମ ବୁଦ୍ଧି ବଦଳାଇଲା । ଭଲେ ଭାବନ୍ତେଲ ମଣିଷ ସ୍ବତନ୍ତ୍ର ନୁହେଁ । ଭିକଯୂର ମଧ୍ଯ ଅନ୍ତ ଅଛି । ଜଗଦୀଶ କୃପାରୁ ଆମ୍ଭ ଦୁର୍ଦ୍ଦଶା ଦୂର ହେବ । ବିଷାଦକୁ ତେଜ, ପ୍ରମୋଦକୁ ଭଜ ।” ଯେ ଏ ଭଳି ଗାତରେ ସ୍ବାମୀକୁ ପ୍ରବୋଧ ଦେଇପାରେ, ସହଧର୍ମିଣୀ ଆଖ୍ୟା ତାହାଠାରେ ସାର୍ଥକ । ସେ ପ୍ରକୃତ ହିତୈ-ଷିଣୀ, ପ୍ରକୃତ ମନ୍ତ୍ରୀ । ମୂର୍ତ୍ତିଚନ୍ଦ୍ର ବେଗମୁକ୍ତ ହୋଇ ପିତାଙ୍କ ପାଦ ଧରି କାନ୍ଦି କ୍ଷମା ଭିକ୍ଷା କଲ । ପିତୃହୃଦୟ କ୍ଷମାରେ ଗଢ଼ା । ସେ ପୁତ୍ରକୁ ସଜଳନେତ୍ରରେ ଆଲିଙ୍ଗନ କରି କ୍ଷମାର ନିଦର୍ଶନ ଦେଖାଇଲେ । ବିଚ୍ଛେଦ ପରେ ପିତା, ପୁତ୍ର ଓ ପୁତ୍ରବଧୂର ମିଳନଚିତ୍ର ବଡ଼ ମଧୁର ହୋଇଅଛି । କମଳା ସେଠାରେ ଉପସ୍ଥିତ ଥିଲେ, ତାହା ଆହୁରି ମଧୁମୟ ହୋଇଥାନ୍ତା । କମଳା ପୂର୍ବରୁ ନିରୁଦ୍ଦେଶ ହୋଇଥିଲା ।

ଗଳ୍ପଟିରେ ମୌଳିକତା ଅଛି, ବିଶେଷତ୍ବ ଅଛି, ଗ୍ରନ୍ଥ ଦୃଢ଼ ଏବଂ ସୁନ୍ଦର । ସାଧାରଣ ବୋଧଗମ୍ୟ କରିବା ପାଇଁ ଗଳ୍ପଟିକୁ ସରଳ କରାଯାଇଅଛି । “ଜିଗର, ମଙ୍ଗିଲା, ଖୁସାମତ, ନିହାତି, ଘଇତା, ମାଇପ, ବାପୁଡ଼ା, ଥୋଡ଼ା ଭଳେ” ପ୍ରଭୃତି ଅନେକ ଗ୍ରାମ୍ୟ ଶବ୍ଦ ବ୍ୟବହୃତ ହୋଇ ବିଷୟକୁ ଅଧିକ ସରଳ ଏବଂ ସୁଖପାଠ୍ୟ କରିଅଛି । ସ୍ଥାନ ବିଶେଷରେ “ବୁଟ, ଓଭର କୋଟ, ହ୍ୟାଟ, ପୋର୍ଟର, ସୁଟକେଶ୍ ପ୍ରଭୃତି ଇଂରେଜୀ ଶବ୍ଦ ବ୍ୟବହୃତ ହୋଇଅଛି; ମାତ୍ର ତାହା ଓଡ଼ିଆ ଅକ୍ଷରରେ ବ୍ୟବହୃତ ହୋଇଥିବାରୁ ପଠନର ଅସୁବିଧା ଦୂର ହୋଇ-ଅଛି । “କଷ୍ଟୀ ସୁଖୀ ହେବା ସହ୍ୟ; କିନ୍ତୁ ସୁଖୀ କଷ୍ଟୀ ହେବା ଦୁଃସହ,” “କୋଳରେ ଥିବାଯାଏ ପୁତ୍ର, ଥୋଡ଼ ବଢ଼ିଲେ ସେ ଅମିତ୍ର” ଏହିପରି କେତେ ଗୁଡ଼ିଏ ସୁବଚନ ଗଳ୍ପର କଳେବର ଆଲୋକିତ କରିଅଛି ।

କେବଳ ମୁଦ୍ରସାହିତ୍ୟ ପ୍ରଚାରରେ ସାହାଯ୍ୟଦାନ ଏବଂ ପୁସ୍ତକ-ପ୍ରବନ୍ଧାଦି ଲେଖାରେ ସାହିତ୍ୟ ସମ୍ରାଟଙ୍କର ସାହିତ୍ୟ ସେବା ପର୍ଯ୍ୟବସିତ ନୁହେଁ । ସାହିତ୍ୟୋନ୍ନତିର ବିଭିନ୍ନ ଶାଖା ପ୍ରତି ମଧ୍ଯ ତାଙ୍କର ଦୃଷ୍ଟି ବହୁମୁଖୀ ପାଠାଗାର ସାହିତ୍ୟପ୍ରଗତିରେ ଗୋଟିଏ ବିଭାଗ । ସେଥି ପାଇଁ ସେ ଅନେକ ପାଠାଗାରକୁ ଅର୍ଥ; ପୁସ୍ତକ ସାହାଯ୍ୟ କରିଅଛନ୍ତି ଏବଂ କରୁଅଛନ୍ତି । ନବରଙ୍ଗ-ପୁର ପାଠାଗାର ନିର୍ମାଣ ସକାଶେ ସେ ଏକ ହଜାର ଟଙ୍କା ଦାନ କରିଅଛନ୍ତି, ଅବଶିଷ୍ଟ ଦେବାକୁ ମଧ୍ଯ ସ୍ବୀକୃତ ହୋଇଅଛନ୍ତି । ପଣ୍ଡିତ ନୀଳକଣ୍ଠ ଦାଶଙ୍କ ସମ୍ପାଦିତ ‘ନବଭାରତ’ ମାସିକ ପତ୍ର ତାଙ୍କର ଦାନରେ ପ୍ରତିଷ୍ଠିତ । ଉକ୍ତ ପତ୍ରର

ପରିଚାଳନ ପାଇଁ ସେ ପାଞ୍ଚ ହଜାର ଟଙ୍କା ଦାନ କରିଅଛନ୍ତି । ଡାକ୍ତର ମୁଞ୍ଜେଙ୍କ ହିନ୍ଦୁ ସୈନିକ ଶିକ୍ଷାଶାଳା ପାଇଁ ତିନି ହଜାର ଏବଂ କବିଗୁରୁ ରବୀନ୍ଦ୍ରନାଥ ଠାକୁରଙ୍କ ଶାନ୍ତିନିକେତନକୁ ପାଞ୍ଚ ହଜାର ଟଙ୍କା ଦାନ କରିଅଛନ୍ତି । ଅନେକ ସ୍କୁଲକୁ ସେ ଅର୍ଥ ସାହାଯ୍ୟ କରନ୍ତି । ଓଡ଼ିଶାବାସୀ ତାଙ୍କ ପ୍ରତି ଏ ରୂପ ଭକ୍ତି-ପ୍ରବଣ ଯେ, ତାଙ୍କ ପବିତ୍ର ନାମରେ ବିଦ୍ୟାଳୟ ସ୍ଥାପନ କରି କୃତଜ୍ଞତା ପ୍ରଦର୍ଶନ କରୁଅଛନ୍ତି । ଅଳ୍ପଦିନ ପୂର୍ବରେ ସେ ବାଣପୁର ହାଇସ୍କୁଲକୁ ଦୁଇ ହଜାର ଟଙ୍କା ଦାନ କରି ଦେଶରେ ଆନନ୍ଦର ଢେଉ ଖେଳାଇ ଦେଇଅଛନ୍ତି । ତାଙ୍କର ଏହିପରି ସାନ ବଡ଼ ଦାନର ପରିମାଣ ଅସଂଖ୍ୟ । ତାହା ସବୁ ସଂଗ୍ରହ କରି ଲେଖିବା ସହଜ ନୁହେଁ । ଦେଶର ଯେ କୌଣସି ଶୁଭାନୁଷ୍ଠାନ ସକାଶେ ତାଙ୍କ ନିକଟରେ ପ୍ରାର୍ଥୀ ହେଲେ ସେ କାହାକୁ ଶୂନ୍ୟହସ୍ତରେ ଫେରାନ୍ତି ନାହିଁ । ସେଥି ପାଇଁ ତାଙ୍କ ରାଜକୋଷ ଚିରମୁକ୍ତ ।

ମହାରାଜ ଶ୍ରୀ ବିକ୍ରମ ଦେବ ବର୍ମା ମହୋଦୟ "ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ"ର ପଞ୍ଚମ ଖଣ୍ଡର ମୁଦ୍ରଣ ସକାଶେ ଦଶ ହଜାର ଟଙ୍କା ଦାନ କରିଅଛନ୍ତି । ଏହା ତାଙ୍କର ଏକ ବିଶିଷ୍ଟ ଦାନ। ଏହି ଦାନ ହେତୁ ସେ ଗୋଟାଏ ବିପୁଳ କୀର୍ତ୍ତିରେ ଅଳଙ୍କୃତ ହୋଇଅଛନ୍ତି । ସେ ସମ୍ବନ୍ଧରେ ୫ମ ଭାଗ ୧୮ଶ ସଂଖ୍ୟାର 'ସତ୍ୟ ସମାଚାର" ଲେଖିଅଛନ୍ତି—

"ଜୟପୁରର ମାନନୀୟ ରାଜା ଶ୍ରୀ ବିକ୍ରମ ଦେବ ବର୍ମା ସାହିତ୍ୟସମ୍ରାଟ" ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ଜଣେ ବିଶିଷ୍ଟ ପୃଷ୍ଠପୋଷକ ଅଟନ୍ତି । ଜୟପୁର ରାଜଗାଦି ଅଧିକାର କରିବା ପୂର୍ବରୁ ଭାଷାକୋଷ ପ୍ରତି ବିହାର ଓଡ଼ିଶା ସରକାରଙ୍କ ଦୃଷ୍ଟି ରାଜା ସାହେବ ପ୍ରଥମେ ଆକର୍ଷଣ କରିଥିଲେ । ଜୟପୁର ଅଞ୍ଚଳ ପ୍ରଚଳିତ ବହୁଶତ ଓଡ଼ିଆ ପ୍ରାଦେଶିକ ଶବ୍ଦ ରାଜା ସାହେବ ନିଜେ ସଂଗ୍ରାହକଙ୍କୁ ଯୋଗାଇଅଛନ୍ତି । ଭାଷାକୋଷରେ ବିଶିଷ୍ଟ ପୃଷ୍ଠପୋଷକ ରୂପେ ତାଙ୍କର ପ୍ରତିକୃତି ପ୍ରଥମ ଖଣ୍ଡରେ ପ୍ରକାଶିତ ହୋଇଥିଲା ଓ ୪ର୍ଥ ଖଣ୍ଡ ତାଙ୍କ ନାମରେ ଉତ୍ସୃଷ୍ଟ ହୋଇଅଛି । ଭାଷାକୋଷର ପଞ୍ଚମ ଖଣ୍ଡର ମୁଦ୍ରଣାଦି ବ୍ୟୟ ନିର୍ବାହାର୍ଥ ସେ ବିଶିଷ୍ଟ ଭାବରେ ଅର୍ଥ ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତ ହୋଇଥିଲେ । ଆନନ୍ଦର ବିଷୟ ଯେ, ରାଜାସାହେବ ଉକ୍ତ ପ୍ରତିଶ୍ରୁତି ରକ୍ଷା କରି ଭାଷାକୋଷର ପଞ୍ଚମ ଖଣ୍ଡର ପ୍ରକାଶାର୍ଥ ବର୍ତ୍ତମାନ ଛ ହଜାର ଟଙ୍କା ନଗଦ ଦେଇଅଛନ୍ତି ଓ ଭାଷା କୋଷର ପରବର୍ତ୍ତୀ ଖଣ୍ଡମାନଙ୍କ ସମାପ୍ତ ପୂର୍ବରୁ

ଆଉ ୪ ହଜାର ଟଙ୍କା ସାହାଯ୍ୟ କରିବାକୁ ଆଶା ଦେଇଅଛନ୍ତି । ଜୟପୁର ରାଜା ସାହେବଙ୍କର ଏହି ଉଦାର ଦାନ ପାଇଁ ଆମ୍ଭେମାନେ ତାଙ୍କୁ କୃତଜ୍ଞତା ଅର୍ପଣ କରୁଅଛୁ । ରାଜା ସାହେବ ମୁକ୍ତହସ୍ତ ହୋଇ ନ ଥିଲେ ଭାଷାକୋଷ ଚତୁର୍ଥ ଖଣ୍ଡର ମୁଦ୍ରଣ କାର୍ଯ୍ୟ ଡେରି ପଡ଼ିଥାନ୍ତା ।"

ପୁନଶ୍ଚ ସେହି ସଂଖ୍ୟାରେ ସମ୍ପାଦକ ଲେଖି ଅଛନ୍ତି—"× × × × × × × × ତେଲୁଗୁ ସାହିତ୍ୟ ଓ ଓଡ଼ିଆ ସାହିତ୍ୟରେ ରାଜାସାହେବଙ୍କର ଅଗାଧ ପାଣ୍ଡିତ୍ୟ ଅଛି । ଓଡ଼ିଆରେ ଓ ତେଲୁଗୁରେ ରାଜା ସାହେବ ଅନେକ ଗୁଡ଼ିଏ କାବ୍ୟ ନାଟକାଦି ରଚନା କରିଅଛନ୍ତି ଓ ତହିଁ ମଧ୍ୟରୁ କେତେଗୁଡ଼ିଏ ଗ୍ରନ୍ଥ ମାନ୍ଦ୍ରାଜ ଓ ଆନ୍ଧ୍ର ବିଶ୍ୱବିଦ୍ୟାଳୟର ଉଚ୍ଚଶ୍ରେଣୀମାନଙ୍କରେ ପାଠ୍ୟପୁସ୍ତକ ରୂପେ ନିର୍ବାଚିତ ହୋଇଅଛି । ରାଜାସାହେବ ବିଭିନ୍ନ ପଣ୍ଡିତମାନଙ୍କ ସହି ସଂସ୍କୃତ ତେଲୁଗୁ ଓ ଓଡ଼ିଆ ସାହିତ୍ୟ ଏବଂ ଧର୍ମାଲୋଚନାରେ ଦୈନିକ ପାଞ୍ଚଘଣ୍ଟା ଅତିବାହିତ କରନ୍ତି ।"

ବିରାଟକାୟ ଅଭିଧାନ "ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ"ର ଚତୁର୍ଥଖଣ୍ଡ ମହାରାଜ ବିକ୍ରମ ଦେବ ବର୍ମାଙ୍କ ଅର୍ଥାନୁକୂଲ୍ୟରେ ପ୍ରକାଶିତ । ଭାଷାକୋଷର ସମ୍ପାଦକ ସୁପ୍ରସିଦ୍ଧ ସାହିତ୍ୟିକ ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ପ୍ରହରାଜ ବି. ଏଲ୍. ମହୋଦୟ ତାଙ୍କ ଉପହାର ପତ୍ରରେ ଲେଖିଅଛନ୍ତି—

"The fourth of Purna chandra Oriya Vasakosa is dedicated with kind permission to Sahitya Samrat Raja Sri Sri Sri Vikrama Deva Varma, Raja Saheb, Jeypore Estate, District Vizag who is rightly looked upon as the Vikrama ditya of Utkal, whose burning patriotism has impelled him to devite himself to life-long service in the cause of the Oriya narion with a rare tenacity of purpose, who has during the last forty years identified himself with the movement for the unification of the Oriya speaking tracts, whose catholic munificence in the cause of education and for the all round progress of the Oriya nation has made him the pride and glory of ten millions

of Oriyas, who is him-self a great poet and author of renown and who has been a staunch and active supporter of this lexicon.

CUTTACK<br>June 1934 } In grateful regard<br>by<br>his humble admirer,<br>The compiler,"

"ଯେଉଁ ଉଦାରଚେତା ମହାମନୀଷୀ ଉତ୍କଳସାହିତ୍ୟାକାଶରେ ସମ୍ପ୍ରତି ଶାରଦ ସୁଧାଂଶୁ ରୂପେ ବିରାଜିତ ରହି ଉତ୍କଳ କବିହୃଦକୈରବକୁଳକୁ ବିକଶିତ କରିଉଅଛନ୍ତି, ଖଣ୍ଡବିଖଣ୍ଡ ମାତୃଭୂମିର ଏକୀକରଣ କଳ୍ପନାରେ ଯେ ଗତ ୪୦ ବର୍ଷ ହେଲା ଆତ୍ମାପ୍ରାଣ ବିନିଯୋଗ କରିଅଛନ୍ତି, ଯାହାଙ୍କର ଉଦାର ହୃଦୟ ଓ ପ୍ରଶସ୍ତ ଦାନର ପୁଣ୍ୟ ନିଦର୍ଶନ ସମସାମୟିକ ଉତ୍କଳର ଜାତୀୟ ଇତିହାସରେ ସ୍ୱର୍ଣ୍ଣବର୍ଣ୍ଣାବଳୀରେ ରଞ୍ଜିତ ହୋଇ ରହିବ, ଯେଉଁମାନଙ୍କ ପୂର୍ବେ ଯାହାଙ୍କଠାରୁ ଅକିଞ୍ଚନ ସଂଗ୍ରାହକ ଏହି ଭାଷାକୋଷର ସଙ୍କଳନ ପାଇଁ ଯଥେଷ୍ଟ ଉତ୍ସାହ ଲାଭ କରି ଧନ୍ୟଂମନ୍ୟ ହୋଇଅଛି, ଭାରତବର୍ଷ ଚକ୍ରବର୍ତ୍ତି ବିକ୍ରମାଦିତ୍ୟକଳ୍ପ ଉତ୍କଳ-ସାହିତ୍ୟସମ୍ରାଟ ବିଶାଖାପତ୍ତନ ଅନ୍ତର୍ଗତ ଜୟପୁର ରାଜ୍ୟାଧୀଶ୍ୱର ମହାରାଜ ଶ୍ରୀ ଶ୍ରୀ ଶ୍ରୀ ବିକ୍ରମ ଦେବ ବର୍ମା ମହୋଦୟଙ୍କ ମହିମାମୟ କର କମଳରେ ତାଙ୍କର ସାନୁଗ୍ରହ ଅନୁମତି ସହ ଭାଷାକୋଷର ଚତୁର୍ଥ ଖଣ୍ଡ ଅର୍ପିତ ହେଲା ।"

ସାହିତ୍ୟସମ୍ରାଟ ମହାରାଜ ଶ୍ରୀ ବିକ୍ରମ ଦେବ ବର୍ମା ମହୋଦୟଙ୍କର ସାହିତ୍ୟ ସାଧନାର ପୂର୍ଣ୍ଣ ବିକାଶ ଘଟିଅଛି । ତାଙ୍କର ବର୍ତ୍ତମାନ ସମୟର ଲେଖା ପରିପକ୍ୱ ଏବଂ ଭାବସମ୍ପଦରେ ସମୃଦ୍ଧ । ବର୍ତ୍ତମାନ ତାଙ୍କର ବୟସ ୭୮ ବର୍ଷ । ଏ ବୃଦ୍ଧାବସ୍ଥାରେ ହୁଦ୍ଧା ତାଙ୍କର ସାହିତ୍ୟସେବା ଶିଥିଳ ହୋଇ ନାହିଁ । ମନୋବଳରେ ଯୁବକ ମଧ୍ୟ ତାଙ୍କଠାରେ ପରାସ୍ତ । ତାଙ୍କର ମନୋବଳ ପ୍ରବଳ ଅଶ୍ୱଗତିରେ ଛୁଟିଅଛି । ବର୍ତ୍ତମାନ ସେ ଛନ୍ଦଖଣ୍ଡ ବିରାଟ ଗ୍ରନ୍ଥ ଲେଖିଅଛନ୍ତି । ଛନ୍ଦଖଣ୍ଡି ଯାକ ଅଧ୍ୟାତ୍ମିକ ଗ୍ରନ୍ଥ । "ପୁରନ୍ଦର ଦାସୀ ଚରିତ" ନାମରେ ହରିକଥା ଲିଖିତ ହୋଇଅଛି । ତାହା ଗଦ୍ୟ, ପଦ୍ୟ ଏବଂ ସଙ୍ଗୀତ ବିଶିଷ୍ଟ । ତେଲୁଗୁ ଭାଷାରେ "କଳାପୂର୍ଣ୍ଣୋଦୟ" ନାମରେ ଯେଉଁ ଏକ ଉତ୍କୃଷ୍ଟ ଗ୍ରନ୍ଥ ଅଛି, ତାହାର ଓଡ଼ିଆ ପଦ୍ୟାନୁବାଦ ହୋଇଅଛି । ପୁଣି ମହାତ୍ମା ତୁଳସୀଦାସ ବିରଚିତ 'ବିନୟ ପତ୍ରିକାର' ଅନୁବାଦ ପଦ୍ୟାକାରରେ ଲିଖିତ ହୋଇଅଛି । ଏହି ଛନ୍ଦଖଣ୍ଡି ଗ୍ରନ୍ଥ

ପ୍ରକାଶିତ ହେଲେ ତାହା ଉତ୍କଳ ସାହିତ୍ୟଭଣ୍ଡାରରେ ସ୍ଥାୟୀ ରତ୍ନ ହୋଇ ରହିବ । ତାଙ୍କର ଏ ଦାନ ଓଡ଼ିଆ ଜାତି ପାସୋରିପାରିବ ନାହିଁ । ଜରାଜୀର୍ଣ୍ଣଶୀର୍ଣ୍ଣ କଳେବରରେ ଯେ ଏ ଭଳି ବିରାଟ ଗ୍ରନ୍ଥ ଲେଖିବାକୁ ସାହସୀ ହୁଅନ୍ତି, ତାଙ୍କର ଅସୀମ ସାହସର କଥା ଚିନ୍ତାକଲେ ମସ୍ତକ ବିଘୂର୍ଣ୍ଣିତ ହୋଇଉଠେ । ଏ ଭଳି ନିଷ୍ଠାପର ସାହିତ୍ୟଯୋଗୀ ଉତ୍କଳରେ ଅଛନ୍ତି, ଏହା ଦେଶ ଏବଂ ଜାତି ପକ୍ଷରେ ଗର୍ବର କାରଣ ନୁହେଁ କି ? ସାହିତ୍ୟସେବା ବଡ଼ ସହଜ ବ୍ୟାପାର ନୁହେଁ । କୃଷକ ମାଟି ସଙ୍ଗରେ ମାଟି ହେବା ପରି ସାହିତ୍ୟସେବକକୁ ଜୀବନଟାଯାକ ଚିନ୍ତାରେ ମିଶି ଚିନ୍ତା ହୋଇ ରହିବାକୁ ହୁଏ । ଥରେ ସାହିତ୍ୟସମ୍ରାଟ କଥା ପ୍ରସଙ୍ଗରେ କହିଥିଲେ—"ମନୋଭାବକୁ କବିତାକାରରେ ପ୍ରକାଶ କଲାବେଳେ ସ୍ଥାନେ ସ୍ଥାନେ ବଡ଼ ହରବର ହେବାକୁ ହୁଏ । ଭାବପ୍ରକାଶର ଉପଯୁକ୍ତ ଶବ୍ଦ ନ ମିଳିଲେ ବାନ୍ଧୁ ବାନ୍ଧୁ ଗଳଦଘର୍ମ ହେବାକୁ ପଡ଼େ । ସେତେବେଳେ ପ୍ରସବ ବେଦନା ପରି ଯନ୍ତ୍ରଣାରେ ଛଟପଟ ହେବାକୁ ହୁଏ, ମାତ୍ର ତାହା ପୂରଣ ହୋଇଗଲେ ଅର୍ଥାତ୍ ଭାବପ୍ରକାଶ ଭଳି ଉପଯୁକ୍ତ ଶବ୍ଦ ମିଳିଗଲେ ଠିକ୍ ପୁତ୍ରଲାଭ ପରି ସୁଖ ଏବଂ ଆନନ୍ଦ ଅନୁଭୂତ ହୁଏ ।" ଏ ଉକ୍ତିରୁ ତାଙ୍କର ସାଧନାର କ୍ଷେତ୍ର କିପରି ବିସ୍ତୃତ, ସାହିତ୍ୟସେବା କି ରୂପ ନିୟମିତ ଏବଂ ଅବିଚ୍ଛିନ୍ନ, ଚିନ୍ତାଶକ୍ତି କେତେ ଗଭୀର, କଳ୍ପନା କେତେ ଉଚ୍ଚ ଏବଂ ଅନୁଭୂତି କେତେ ପରିପକ୍ୱ, ତାହା ଭୁକ୍ତ ଭୋଗୀ ମାନେ ସହଜରେ ବୁଝିପାରିବେ । ବାସ୍ତବରେ ଗୋଟାଏ ମନୋମତ ଭାବ ବା ଶବ୍ଦ ସକାଶେ ଯେ ପୁତ୍ର ପ୍ରାପ୍ତି ଭଳି ଏତେ ବଡ଼ ଆନନ୍ଦ ଏବଂ ତୃପ୍ତି ଉପଭୋଗ କରିପାରନ୍ତି, ସେହି ଏକା ପ୍ରକୃତ ଭାବୁକ ଏବଂ ପ୍ରକୃତ କବି । ସାରସ୍ୱତ ରାଜ୍ୟର ରତ୍ନସିଂହାସନ ତାଙ୍କର ପାଇଁ ନିର୍ଦ୍ଦିଷ୍ଟ, ତାଙ୍କ ସ୍ପର୍ଶରେ କବି ଆଖ୍ୟା ଧନ୍ୟ ହୁଏ ।

ରାଜକବିଙ୍କ ସଙ୍ଗରେ କଥାବାର୍ତ୍ତା ହେଲେ ଅନେକ ବିଷୟ ଶିକ୍ଷା ହୁଏ । ହାସ୍ୟ କୌତୁକ ଆମୋଦ ପ୍ରମୋଦରେ ସୁଦ୍ଧା ସେ ଊଣା ନୁହନ୍ତି । ସମୟ ସମୟରେ ଅନେକ ଦୃଷ୍ଟାନ୍ତମୂଳକ ପ୍ରବାଦ, ଢଗ ପ୍ରଭୃତି କଥାଛଳରେ ଆବୃତ୍ତି କରନ୍ତି । ତେଲୁଗୁ ପ୍ରବାଦର ଉଦାହରଣ ସେ ଅଧିକ ଦିଅନ୍ତି । ତାହା ତେଲୁଗୁ ଗ୍ରନ୍ଥର ବିଶେଷ ଅନୁଶୀଳନର ଫଳ । ଥରେ କଥା ପ୍ରସଙ୍ଗରେ କହିଥିଲେ — "ତେଲୁଗୁରେ ଗୋଟାଏ ପ୍ରବାଦ ଅଛି, ବଳଦ ବେଇଲେ ପାଞ୍ଚମାଣ ଦୁଧ ଦେବ ।" (ମାଣକ ଗୁରସେର) ଅର୍ଥାତ କୋଡ଼ିଏସେର ବା ଅଧ ମହଣେ ଏହା

ଅସ୍ୱାଭାବିକତା ବ୍ୟଞ୍ଜକ ଉକ୍ତି । ବଳଦ ଦୋହିବା ଯେପରି ଅସମ୍ଭବ, ଅଧ ମହଣେ ଦୁଧ ଦେବା ମଧ୍ୟ ତହୁଁ ବଳି ଅସମ୍ଭବ । ଆଉ ଥରେ କହିଥିଲେ,—"କାଣ୍ଡି ଘୋଡ଼ାର ଶିଙ୍ଗ ନାହିଁ, ଶିଙ୍ଗ ଥିଲେ ଘୋଡ଼ା ରହନ୍ତା ନାହିଁ ।" ଦୁର୍ଜନ ସ୍ୱଭାବତଃ ଦୁଷ୍କରଣୀରତ, ତହିଁ ଉପରେ ପୁଣି ସେ ମନୋମତ କ୍ଷମତା ପାଇଲେ ଅଉ କ ରକ୍ଷାରକ୍ଷଣ ଅଛି । ରାଜକବିଙ୍କ ଗୃହିଣୀପଦଗୁଡ଼ିକ ଖୁବ୍ ଚମତ୍କାର । ଗପ କହିବାର ଭଙ୍ଗୀ ମଧ୍ୟ କୌତୁକପ୍ରଦ । ଯେତେ ଶୁଣୁଥିଲେ ଶ୍ରୋତାର ଇଚ୍ଛା ତେତେ ପ୍ରବଳ ହେଉଥାଏ । ଫୁଲାଇ, ଫେଣାଇ, ନଚାଇ, ଖେଳାଇ ସେ କଥାକୁ ଅଯଥା ଭାରାକ୍ରାନ୍ତ ବା ମୋଟା କରନ୍ତି ନାହିଁ । ସରଳ ଭାଷାରେ ସଂକ୍ଷେପରେ ବ୍ୟକ୍ତ କରନ୍ତି । ଖାଲି ଏଣୁ ତେଣୁ ଗୁଡ଼ାଏ କହିବା ତାଙ୍କର ପ୍ରକୃତି ବିରୁଦ୍ଧ । ଯେଉଁ ଗଳ୍ପ କହନ୍ତି, ତାହା ନାନା ଶିକ୍ଷା ଏବଂ ଉପଦେଶରେ ପୂର୍ଣ୍ଣ । ଗଳ୍ପର ବାହାର ରୂପ, ଭିତର ରୂପ ସବୁ ସୁନ୍ଦର ଏବଂ ଚମତ୍କାର ।

ନୈସର୍ଗିକ କବି ସାହିତ୍ୟସମ୍ରାଟଙ୍କର କବିସୁଲଭ ରସିକତା ବଡ଼ ମଧୁର, ବଡ଼ ଉପଭୋଗ୍ୟ । ତାଙ୍କ ମୁଖରୁ କେତୋଟି ଗଳ୍ପ ବା ରୂପକଥା ଶୁଣିବାର ସୁଯୋଗ ଲେଖକଭାଗ୍ୟରେ ଘଟିଥିଲା । ସେଥି ମଧ୍ୟରୁ ମାତ୍ର ଏଟି ଶିକ୍ଷାମୂଳକ ଦୁଇଟି କଥା ଏଠାରେ ଲିଖିତ ହେଲା । ତାଙ୍କ ଗଠିତ ଗଳ୍ପର ମୂର୍ତ୍ତି ମଠା ବା ପାଲିସ କରା ନୁହେଁ କିମ୍ବା ସେଥିରେ ଅସମାନ ରଙ୍ଗର ଚାକଚକ୍ୟ ନାହିଁ । ତାହାର ସରଳ ସ୍ୱାଭାବିକ ସୁଷମା ମାତ୍ର ଚିତ୍ତକୁ ଆକର୍ଷଣ କରିନିଏ । ଗଳ୍ପଟି ଜଣେ ବିଚିତ୍ରବୁଦ୍ଧି ଗୁରୁଙ୍କର ବିଚିତ୍ର ଶିକ୍ଷାଦାନର ହାସ୍ୟକର କାହାଣୀ ।

ପୂର୍ବେ ଜଣେ ଗୁରୁ ଥିଲେ, ସେ ଶିଷ୍ୟକୁ ରାଗ ରାଗିଣୀ ଶିକ୍ଷା ଦେଉଥାନ୍ତି । ସେହି ଭଟ୍ଟାଚାର୍ଯ୍ୟ ଗୁରୁ ମହାଶୟ ଶିଷ୍ୟକୁ କହିଥିଲେ 'ତୁ ମୋତେ ଯେତେବେଳେ ଯାହା କହିବୁ, ତାହା କଥା କହିଲା ପରି କହିବୁ ନାହିଁ; ରାଗରାଗିଣୀ ଧରି ଗୀତ ଗାଇଲା ପରି କହିବୁ ।' ଗୁରୁଭକ୍ତ ଶିଷ୍ୟଟି ଗୁରୁଙ୍କର ଏହି କଠୋର ଆଜ୍ଞା ଶିରୋଧାର୍ଯ୍ୟ କରି ଚଳୁଥାଏ । ସେ ଗୁରୁଙ୍କୁ ଡାକିଲେ କହେ—"ହେ ଏ-ଏ-ଗୁ ଉ-ଉ ରୁ-ଉ ଉ ।" ଏହିପରି ସଙ୍ଗୀତସ୍ୱରରେ ସେ ଗୁରୁଙ୍କୁ ସମ୍ଭାଷଣ କରେ । ଥରେ ଗୁରୁଙ୍କ ଘରେ ନିଆଁ ଲାଗିଲା । ତତକ୍ଷଣ ଶିଷ୍ୟ ଗୁରୁଙ୍କୁ ଏହି ସମ୍ବାଦ ଶୀଘ୍ର ଜଣାଇବାକୁ ଯାଇ ଖୁବ୍ ରାଗିଣୀ ଟେକ ସେହି ସ୍ୱରକୁ ନଚାଇ, ଖେଳାଇ, ଉଠାଇ, ପକାଇ, ଦୋହରାଇ, ତେହେରାଇ, ଚଉତାଇ କହିଲା—

"ଗୁରୁ ହେ, ଆପଣଙ୍କ ଘର ପୋଡ଼ ଯାଉଛି ।" ଏହି ରାଗରାଗିଣୀ ଆଡ଼ମ୍ବର-ପୂର୍ଣ୍ଣ ସଙ୍ଗୀତମୟ ସମ୍ବାଦ ଶୁଣୁ ଶୁଣୁ ସଙ୍ଗୀତରସିକ ଗୁରୁଦେବଙ୍କର କ୍ରୋଧ-ଖଣ୍ଡି ଅଗ୍ନି ଦେବତା ଗର୍ଭସାତ୍ କରିଦେଲେ । ଗୁରୁଜି ସଙ୍ଗୀତପ୍ରିୟତାର ଚୂଡ଼ାନ୍ତ ପୁରସ୍କାର ସ୍ୱରୂପ କାନ ମୁଣ୍ଡ ଆଉଁସିବାକୁ ଲାଗିଲେ । ସେ ଶିଷ୍ୟଙ୍କୁ ରାଗ ରାଗିଣୀ ବିଶାରଦ ତୁମ୍ବୁରୁ ଗନ୍ଧର୍ବ ପରି ରାଗ ରାଗିଣୀରେ ମିଶାଇଦେବାକୁ ଇଚ୍ଛା କରିଥିଲେ; ମାତ୍ର ଦୈବଯୋଗରୁ "ବାନ୍ଧୋପ୍ରାର୍ଥୀବ ବାନର" ଦଶା ପ୍ରାପ୍ତ ହେଲେ । ଗୁରୁ ଶିଷ୍ୟ ଉଭୟେ ସମାନ ବୁଦ୍ଧିମାନ୍ କେହି କାହାକୁ ଊଣା ନୁହେଁ । ବୋଧହୁଏ ବିଧାତା ଗର୍ଦ୍ଦଭ ଗଢ଼ୁଁ ଗଢ଼ୁଁ ଭୁଲରେ ଗୁରୁ ଗଢ଼ି ପକା-ଇଥିଲେ । ଏହିପରି ଆମୋଦପ୍ରଦ ଗଳ୍ପ ରାଜକବି ଅନେକ କହନ୍ତି । ତାଙ୍କ ପାଖରେ ଥିବା ପର୍ଯ୍ୟନ୍ତ କିଛି କହିବାକୁ ଇଚ୍ଛା ହୁଏ ନାହିଁ, କେବଳ ନୀରବରେ ବସି ତାଙ୍କ କଥା ଶୁଣିବାକୁ ବିଶେଷ ଆଗ୍ରହ ଜାତ ହୁଏ । ତାଙ୍କ ଜିହ୍ୱାରେ କି ମଧୁ ଅଛି କେଜାଣି, ସେ ଯାହା କହନ୍ତି ତାହା ମଧୁର । ନିତାନ୍ତ ନୀରସ, ସାମାନ୍ୟ କଥା ବି ତାଙ୍କ ତୁଣ୍ଡରୁ ମଧୁମୟ ରୂପ ଧରି ବାହାରିଆସେ ।

ଆଉଦିନେ ଶଙ୍କରାଚାର୍ଯ୍ୟ, ତୁଳସୀ ଦାସ, କବିର ପ୍ରଭୃତି ମହାପୁରୁଷ-ମାନଙ୍କର ପଦାବଳୀ ଆଲୋଚନା କରୁ କରୁ କହିଥିଲେ — "କବିର ମରିବା ପୂର୍ବରୁ ତାଙ୍କ ପିଣ୍ଡ ସତ୍କାର ସମ୍ବନ୍ଧରେ କହିଥିଲେ—'ଗାଡ଼ୋ ମତ୍ ଜାଲୋ' । ବାକ୍ୟଟି ଦୁଇ ଅର୍ଥବୋଧକ । ତାଙ୍କ ମୃତ୍ୟୁପରେ ତାଙ୍କର ହିନ୍ଦୁ ମୁସଲମାନ ଉଭୟ ସମ୍ପ୍ରଦାୟର ଶିଷ୍ୟମାନେ ଏହି କଥା ନେଇ ବିବାଦ ଆରମ୍ଭ କଲେ । ଦୁଇଦଳ ଦୁଇ ଅର୍ଥ କରି ନିଜ ନିଜର ମତ ରକ୍ଷା ସକାଶେ ଦୃଢ଼ବ୍ରତୀ ହୋଇ ବସିଲେ । ହିନ୍ଦୁମାନେ ଅର୍ଥ କଲେ -'ଗାଡ଼ୋ ମତ୍—ଜାଲୋ ।' ଅର୍ଥାତ୍ ପୋତ ନାହିଁ—ପୋଡ଼ । ମୁସଲମାନମାନେ ଅର୍ଥକଲେ—"ଗାଡ଼ୋ, ମତ ଜାଲୋ ।" ଅର୍ଥାତ୍ ପୋତ, ପୋଡ଼ ନାହିଁ । ଏ ବିରୋଧାର୍ଥ ନେଇ ଦୁଇଦଳଯାକ ବିଷମ ସମସ୍ୟାରେ ପଡ଼ିଲେ । ଶେଷରେ ଦେଖାଗଲା, ଯୋଗସିଦ୍ଧ ସାଧୁ ମହାତ୍ମା ଫୁଲ ପାଲଟି ଯାଇଅଛନ୍ତି ।" ଅତୀତର ଧର୍ମବୀରମାନଙ୍କ ସମ୍ବନ୍ଧରେ ରାଜକବି ଏହିପରି ଅନେକ କଥା କହନ୍ତି । ତାଙ୍କର ଭୂୟୋଦର୍ଶନ ଶକ୍ତି ଅତି ଚମତ୍କାର । ତାଙ୍କ ପରିପକ୍ୱ ଜ୍ଞାନ, ଅସାଧାରଣ ବହୁଦର୍ଶିତା ଦେଖିଲେ ଆଶ୍ଚର୍ଯ୍ୟରେ ସ୍ତମ୍ଭୀଭୂତ ହେବାକୁ ହୁଏ । ଏହି କାରଣରୁ ତାଙ୍କ ସଙ୍ଗରେ କଥା କହିବାକୁ ବା ଯୁକ୍ତି କରିବାକୁ କାହାରି ସାହସ କୁଳାଏ ନାହିଁ । ମୁହେଁ ମୁହେଁ

ସଂସ୍କୃତରେ ବାକ୍ୟ ରଚନା କରିବା ବିଷୟରେ ତାଙ୍କ ପରି ଧୂରନ୍ଧର ବ୍ୟକ୍ତି ବିରଳ ଲକ୍ଷିତ ହୁଅନ୍ତି । ଅନେକ ବଡ଼ ବଡ଼ ଉପାଧିଧାରୀ ପଣ୍ଡିତ ଆଶୁ ଶ୍ଳୋକ ରଚନା ବିଷୟରେ ତାଙ୍କର ସମକକ୍ଷ ହୋଇପାରନ୍ତି ନାହିଁ । ଗୁଣଗ୍ରାହୀବର୍ଗ ତାଙ୍କଠାରେ ପରାଜିତ ହୋଇ କ୍ଷୁବ୍ଧ ହୁଅନ୍ତି ନାହିଁ । ପ୍ରତ୍ୟୁତଃ ଅନେକଙ୍କୁ ମୁଠେ ଦେବାର ଦେଖାଯାଏ । "ମହାଶୟ" ଶବ୍ଦର ଅପବ୍ୟୟ ସେ ଯେତେ କରନ୍ତି ଅନ୍ୟ କେହି ସେତେ କରନ୍ତି କି ନାହିଁ ସନ୍ଦେହ । ମାନ୍ୟଗଣ୍ୟଠାରୁ ସାଧାରଣ ପର୍ଯ୍ୟନ୍ତ ସମସ୍ତଙ୍କୁ "ମହାଶୟ" ସମ୍ବୋଧନ କରିବା ତାଙ୍କର ଚିର ଅଭ୍ୟାସ । ସ୍ୱାମୀ, ମହିମା, ମହାପ୍ରଭୁ, ନ କହି ଆଜ୍ଞା ଅପଣ କହିଲେ ତହିଁକି ଭ୍ରୂକ୍ଷେପ ନ ଥାଏ । ଏହାଠାରୁ ବଳି ନିରଭିମାନତାର ପରିଚୟ ଅଉ କଅଣ ହୋଇ-ପାରେ ? ସେ ପରଠାରୁ ସମ୍ମାନ ପ୍ରାପ୍ତିର ଆଶା ନ କରି ପରକୁ ସମ୍ମାନ ଦାନରେ ମୁକ୍ତହସ୍ତ, ତାଙ୍କର ଚରିତ୍ର ସ୍ୱର୍ଗୀୟ ଉପାଦାନରେ ଗଠିତ । ଯେଉଁ-ମାନେ ତାଙ୍କୁ ଚିହ୍ନନ୍ତି, ସେମାନେ ଏ କଥାକୁ ଉପହାସ ବା ଅତ୍ୟୁକ୍ତି ମଣିବେ ନାହିଁ ।

ସାହିତ୍ୟ ସମ୍ରାଟ ମହାରାଜ ଶ୍ରୀ ବିକ୍ରମ ଦେବ ବର୍ମା ମହୋଦୟ ମୂର୍ତ୍ତିମାନ୍ ସୌଜନ୍ୟ ଦେବତା । ତାଙ୍କର ଚରିତ୍ର ସବୁବେଳେ ସରଳ ଏବଂ ସଫାସୁତରା । କୁଟିଳତା ସେ ଦେବଚରିତ୍ରକୁ ସ୍ପର୍ଶ କରିବାକୁ କେବେ ଦୁଃସାହସୀ ହୁଏ ନାହିଁ । ସାନ ବଡ଼ ପ୍ରତ୍ୟେକ ଆଲୋଚନା ଭିତରେ ସଂକଳ୍ପଭାବରେ ପ୍ରବେଶ କରି ତାହା ସମାଧାନ କରନ୍ତି । ଚରିତ୍ର ହିଁ ତାଙ୍କର ଅସାଧାରଣ ଉନ୍ନତିର ମୂଳ ଭିତ୍ତି । ମହାଭାରତୀୟ ଯୁଗର ରାଜଚକ୍ରବର୍ତ୍ତୀ ଧର୍ମରାଜ ଯୁଧିଷ୍ଠିରଙ୍କ ପରି ସେ ସହାରେ ସମସ୍ତ କାର୍ଯ୍ୟ ସମ୍ପାଦନ କରନ୍ତି । ବାସ୍ତବରେ ସେ ଜଣେ ଆଦର୍ଶ ମହାତ୍ମା ଏବଂ ଆଦର୍ଶ ରାଜଯୋଗୀ । ସେ ଲକ୍ଷଲକ୍ଷ ପ୍ରଜାର ଶାସକ ହୋଇ ସୁଦ୍ଧା ନିଜକୁ ଶାସକ ନ ମଣି ଶାସିତ ମଣନ୍ତି । ଯେ ନିଜଦ୍ୱାରା ନିଜେ ଶାସିତ ନୁହେଁ, ସେ ଅନ୍ୟକୁ ଶାସନ କରିପାରେ ନାହିଁ । ସେ ସବୁବେଳେ ଆଧ୍ୟାତ୍ମିକ ଭାବରେ ମଗ୍ନ । ଧର୍ମର ନିୟମ ସେ ପ୍ରତି ନିଃଶ୍ୱାସରେ ପାଳନ କରି ଚଳନ୍ତି । ୭୪ ବର୍ଷ ବୟସରେ ମଧ୍ୟ ତାଙ୍କର ଜପ, ତପ ଏବଂ ନିୟମିତ ବ୍ୟାୟାମର ଅଭ୍ୟାସ ଅକ୍ଷତ ଅଛି । ଅଦ୍ୟାବଧି ସେ ଭ୍ରମରେ କିମ୍ବା ଏ କାଳର ଅବଳାବୃନ୍ଦଙ୍କ ମୋହନ-ମୁରଲୀ ସିଗାରେଟ ସ୍ପର୍ଶ କରି ନାହାନ୍ତି । ସନାତନ ଆର୍ଯ୍ୟ ଧର୍ମର ଅଙ୍କୁର ନିଷ୍ଠା ତାଙ୍କଠାରେ ବାସ୍ତବରେ ସେ ଜଣେ ପ୍ରତିମୂର୍ତ୍ତିମାନ ବ୍ୟକ୍ତି । ତାଙ୍କୁ ଦେଖିଲେ

ଯେ କାଳର ପୂର୍ବବର୍ଣ୍ଣିତ ତୃପ୍ତିମୂର୍ତ୍ତି ସ୍ମୃତି ପଟ୍ଟରେ ଅଙ୍କିତ ହୋଇଯାଏ । ବିଧାତା ତାଙ୍କୁ ସର୍ବବାଞ୍ଛିତ ସକଳ କଳାରେ ଅଳଙ୍କୃତ କରି ପଠାଇ-ଅଛନ୍ତି । କେବେ ତାଙ୍କୁ ରାଗିବାର ଦେଖାଯାଏ ନାହିଁ । ଏଭଳି ଅଜାତକ୍ରୋଧ ସାଧାରଣତଃ ଦୁର୍ଲ୍ଲଭ । ଏହି ଗୁଣଟି ତାଙ୍କ ଚରିତ୍ରର ଅଳଙ୍କାରର ଜ୍ୟୋତିର୍ମୟ ଅଳଙ୍କାର ସ୍ୱରୂପ । ତାଙ୍କର ଆତିଥ୍ୟସତ୍କାର ପ୍ରସିଦ୍ଧି । ବିଶାଖପଟ୍ଟଣରେ ଥିଲାବେଳେ ରାଜା ମହାରାଜାମାନେ ଶ୍ରଦ୍ଧାର ନିଦର୍ଶନ ସ୍ୱରୂପ ଯାହାଙ୍କ ଘରେ ବେଳେ ବେଳେ ଆସି ଅତିଥି ହେଉଥିଲେ, ତାଙ୍କର ଅତିଥିସତ୍କାର ଅଧିକ ବର୍ଣ୍ଣନା କରିବା ନିଷ୍ପ୍ରୟୋଜନ । ଯେ ବିଶାଖପଟ୍ଟଣେ କିମ୍ବା ଜୟପୁରରେ ଥରେ ମାତ୍ର ଅତିଥି ହୋଇଅଛି, ସେ ବନ୍ଧୁ ମୁଖରେ ତାଙ୍କର ଅତିଥିସେବାର ପ୍ରଶଂସା ନ କରି ନୀରବ ରହିପାରିବ ନାହିଁ ଏହା ଦୃଢ଼ ଭାବରେ ବୋଲିଯାଇ ପାରେ ।

ମହାରାଜ ଶ୍ରୀ ବିକ୍ରମ ଦେବ ବର୍ମାଙ୍କ ଅମଳରେ ପ୍ରଜାମାନେ ସୁଖରେ ଶାନ୍ତିରେ କାଳଯାପନ କରୁଅଛନ୍ତି ସେମାନଙ୍କ ଅଭାବ ଅଭିଯୋଗର ଯଥାଶୀଘ୍ର-ପ୍ରତିକାର ହେଉଅଛି । ହାଟ ଗୁହାରିଆ ସୁବିଚାର ହେଉଅଛି । ସତ୍ୟ, ନ୍ୟାୟ ଧର୍ମରେ ରାଜ୍ୟ ପରିଚାଳିତ ହେଉଅଛି । ମହାରାଜଙ୍କ ନ୍ୟାୟ ବିଚାରରେ ପ୍ରଜା, ରାଜକର୍ମଚାରୀ ସମସ୍ତେ ପରିତୁଷ୍ଟ । ସେ ଧର୍ମଦଣ୍ଡ ଧରି ମହାରାଜ ହରିଶ୍ଚନ୍ଦ୍ରଙ୍କ ପରି ରାଜ୍ୟଶାସନ କରୁଅଛନ୍ତି । ତାଙ୍କ ଅମଳରେ ବେଠି ପ୍ରଥା ଅଦ୍ଭୁତ ଧରଣର । ସେ ସମ୍ବନ୍ଧରେ ଗୋଟିଏ ପ୍ରତ୍ୟକ୍ଷ ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ ଯୋଗ୍ୟ । ଆଗନ୍ତୁକ-ମାନଙ୍କ ଚର୍ଚ୍ଚା ପାଇଁ କେତେଜଣ ବେଠିଆ ନିଯୁକ୍ତ ହୁଅନ୍ତି । ସେମାନଙ୍କୁ ରାଜସରକାରରୁ ଚାଉଳ ଲୁଣ ପ୍ରଭୃତି ଦିଆଯାଏ, ସେମାନେ ରାନ୍ଧି ଖାଆନ୍ତି । ଖୋରାକ ପରେ ପ୍ରତି ବେଠିଆ ପ୍ରତିଦିନ ଦୁଇଅଣା ଖର୍ଚ୍ଚ ପାଆନ୍ତି । ବେଠିଆ-ମାନେ ଯାହା ପାଆନ୍ତି, ତାହା ତାଙ୍କର ଦୈନିକ ମଜୁରି ସଙ୍ଗେ ପ୍ରାୟ ସମାନ । ସେମାନେ ଏକାଦିକ୍ରମେ ଅଧିକ ଦିନ ରହନ୍ତି ନାହିଁ । ଦୁଇଦିନ ପରେ ପରିବର୍ତ୍ତନ ଘଟେ । ଦଳକର ବେଠି ଶେଷ ହୁଏ, ଆଉ ଦଳେ ଆସି ତାଙ୍କ ସ୍ଥାନ ପୂରଣ କରନ୍ତି । ପ୍ରଜାପ୍ରୀତିର ଦୃଷ୍ଟାନ୍ତ ଏହିଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ । ପ୍ରଜାର ପ୍ରାଣ ମଧ୍ୟରେ ପଶି କେଉଁ ଠାରେ ତାହାର ବ୍ୟଥା ପ୍ରଚ୍ଛନ୍ନ ରହିଅଛି, ତାହା ଜାଣିପାରି ଯେ ଉଚିତ ପ୍ରତିକାର କରନ୍ତି, ସେହି ଏକା "ପ୍ରକୃତିରଞ୍ଜନ" ପଦବୀର ଅପ୍ରତିଦ୍ୱନ୍ଦ୍ୱୀ ଅଧିକାରୀ । ଜୟପୁରର ପ୍ରଜା ଏବଂ କର୍ମଚାରୀମାନେ ବର୍ତ୍ତମାନ ମହାରାଜଙ୍କର ବ୍ୟବହାରରେ ପ୍ରୀତ । ସେମାନେ ଆଗନ୍ତୁକ ଆଗରେ ମହାରାଜ-

ଙ୍କର ଦୟା ଦାକ୍ଷିଣ୍ୟାଦି ସଦ୍‌ଗୁଣାବଳୀ ବ୍ୟାଖ୍ୟାନ କରି ମନରେ ଗର୍ବ ଅନୁଭବ କରନ୍ତି । ତାଙ୍କର ଶାସନ ବସନ୍ତ ଋତୁପରି ନାତିଉଷ୍ଣ, ନାତିଶୀତଳ ଏବଂ ମଧୁର ସୌରଭମୟ । ପ୍ରଜାମାନଙ୍କର ଅବସ୍ଥା କିପରି ଉନ୍ନତ ହେବ, ପ୍ରଜାକୁଳ କିପରି ଶିକ୍ଷା ପ୍ରତି ଆକୃଷ୍ଟ ହେବେ, ସେ ବିଷୟରେ ତାଙ୍କର ଦୃଷ୍ଟି ସମଧିକ । ତାଙ୍କର ରାଜଦଣ୍ଡ ଦୁର୍ବଳଦଳନ ସକାଶେ ନୁହେଁ, ଦୁର୍ବଳର ସହାୟତା ପାଇଁ ସେ ତାହା ଧରିଅଛନ୍ତି ।

ମହାରାଜ ଶ୍ରୀ ବିକ୍ରମ ଦେବ ବର୍ମା ବହୁମୂର୍ତ୍ତିଧାରୀ, ସେ କେତେବେଳେ ସଂସାରୀ, କେତେବେଳେ ଯୋଗୀ, କେତେବେଳେ ପଣ୍ଡିତ, କେତେବେଳେ କବି, କେବେ ଐତିହାସିକ, କେବେ ଜ୍ୟୋତିର୍ବିଦ, କେବେ ସମାଲୋଚକ, କେବେ ସମ୍ପାଦକ, କେବେ ପୌରାଣିକ, କେବେ ଆଳଙ୍କାରିକ, କେବେ ବୈଦାନ୍ତିକ, କେବେ ବା ନୈୟାୟିକ । ଏକାଧାରରେ ଏତେ ଗୁଣର ସମାବେଶ ସାଧାରଣତଃ ଦୁର୍ଲଭ । ପ୍ରତିଭାର ଏରୂପ ବହୁମୁଖୀ ବିକାଶ ସଂସାରରେ ଅତିଅଳ୍ପ ଲୋକଙ୍କ ଭାଗ୍ୟରେ ଘଟେ । ସେ ଅଧିକ ଉଚ୍ଚଶିକ୍ଷିତ ନୁହନ୍ତି; ମାତ୍ର ଉଚ୍ଚଶିକ୍ଷାର ସମସ୍ତ ଶୁଭଫଳ ତାଙ୍କର କରତଳ । ସେ ନିଜେ ନିଜର ମନ୍ତ୍ରୀ ଏବଂ ଉପଦେଷ୍ଟା । ସେ ନିଜକୁ ବି ନିଜର ପ୍ରଜାଜ୍ଞାନ କରନ୍ତି । ସେ ମହାରାଜ ହେଲେହେଁ ସାନାତ୍ମା, ଏହା ତାଙ୍କର ଜ୍ଞାନ ପରିପକ୍ୱତାର ଫଳ । ଅନ୍ୟର ଭ୍ରମ, ତ୍ରୁଟି ସେ ସ୍ୱୀୟ ସହଜ ଉଦାର ଗୁଣରେ ଉପେକ୍ଷା କରନ୍ତି, କିନ୍ତୁ ନିଜକାର୍ଯ୍ୟ ମଧ୍ୟରେ ନିଜର ଦୋଷ ସର୍ବଦା ଖୋଜିବୁଲନ୍ତି । ସେଥିପାଇଁ ତାଙ୍କର ପ୍ରତ୍ୟେକ କାର୍ଯ୍ୟ ପ୍ରାୟଶଃ ନିର୍ଦ୍ଦୋଷ ଏବଂ ନିର୍ଭୁଲ ହୁଏ । ଆତ୍ମଶୁଦ୍ଧି ତାଙ୍କର ସ୍ୱାଭାବିକ ଧାରା । ସେ ନିଜର ଅବମାନନା କ୍ଷମାବୋଳା ହାସ୍ୟ ମୁଖରେ ସହିପାରନ୍ତି, ମାତ୍ର ଜାତି ଏବଂ ଧର୍ମର ଅବମାନନା ତାଙ୍କ ପ୍ରାଣରେ ସର୍ବଥା ଅସହ୍ୟ । ତାଙ୍କ ପରି ରାଜସିଂହାସନରେ ବସି ଯୋଗୀ ଜୀବନ ଯାପନ କରିବାର ଶୁଭ ଦୃଷ୍ଟାନ୍ତ ଅତି ବିରଳ କହିଲେ ଅସଙ୍ଗତ ହେବ ନାହିଁ । କେହି ତାଙ୍କର କୌଣସି ମାତ୍ର ତ୍ରୁଟି ବା ସ୍ଖଳନ ଦେଖାଇପାରିଲେ ଗୋଟାଏ ନୂଆ ରାଜ୍ୟ ପାଇଲା ପ୍ରାୟ ସେ ଆନନ୍ଦ ଉପଭୋଗ କରନ୍ତି । ତାଙ୍କର ଏହି ଗୁଣଟି ସମଗ୍ର ଉତ୍କଳର ରାଜସମାଜ କାହିଁକି ସାଧାରଣ ଶିକ୍ଷିତ ସମାଜରେ ସୁଦ୍ଧା ବଡ଼ ଅଭାବ । ମହାରାଜ ବିକ୍ରମ ଦେବ ବର୍ମା ନିଜର ମତ ଭୁଲ ବୋଲି ବୁଝିପାରିଲା ମାତ୍ରେ, ତାହା ସ୍ୱୀକାର କରି ଭ୍ରମ ସଂଶୋଧନ କରି ନିଅନ୍ତି । ସେଥିପାଇଁ ଲଜ୍ଜା ବା କୁଣ୍ଠା ଅନୁଭବ କରିବା

ତାଙ୍କର ସ୍ୱଭାବ ବିରୁଦ୍ଧ । ଜଗତରେ ଯେଉଁମାନେ ମହାତ୍ମାମାନଙ୍କ ନାମରେ ଆଖ୍ୟାତ, ସେମାନଙ୍କ ବ୍ୟବହାର ଏହିପରି ସ୍ୱତନ୍ତ୍ର । ସେମାନେ ଗର୍ବରେ ସ୍ଫୀତ ହୁଅନ୍ତି ନାହିଁ, ବିନୟରେ ନତ ହୁଅନ୍ତି । ନିଜର ତ୍ରୁଟି ବିଚ୍ୟୁତି ପାଇଁ ନିଜକୁ ଦଣ୍ଡିତ ମଧ୍ୟ କରନ୍ତି । ମହାତ୍ମା ଗାନ୍ଧିଙ୍କର ଉପବାସ ସେଥିର ପ୍ରତ୍ୟକ୍ଷ ଦୃଷ୍ଟାନ୍ତ । ଜାତି ବା ସମାଜର ଦୋଷକୁ ବି ସେ ନିଜର ପାପ ବୋଲି ବିଶ୍ୱାସ କରନ୍ତି ।

ସାହିତ୍ୟସମ୍ରାଟ ରାଜକବି ଶ୍ରୀ ବିକ୍ରମ ଦେବ ବର୍ମାଙ୍କ ବୟସର ଷଷ୍ଠିତମ ବର୍ଷ ବର୍ତ୍ତମାନ ଚାଲୁଅଛି । ଏହି ଅତ୍ୟଳ୍ପ ସମୟ ମଧ୍ୟରେ ସେ ଯାହା କରିଅଛନ୍ତି, ତାଙ୍କ ପୂର୍ବବର୍ତ୍ତୀ ରାଜାଙ୍କ ମଧ୍ୟରେ ଅନେକେ ବହୁ ବର୍ଷରେ ତାହା କରିପାରି ନାହାନ୍ତି । ରାଜ୍ୟ ଯେପରି ବିଶାଳ ବିସ୍ତୃତ, ତାହାର ସବୁ ବିଭାଗ ତନ୍ନ ତନ୍ନ କରି ଦେଖି ଅଭାବ ଅସୁବିଧାର ପ୍ରତିକାର କରିବା ମଧ୍ୟ ସେହିପରି ସମୟସାପେକ୍ଷ, ତଥାପି ପ୍ରତିଆଡ଼କୁ ରାଜଦୃଷ୍ଟି କ୍ରମଶଃ ଅଗ୍ରସର ହେଉଅଛି । ମଙ୍ଗଳ ବିଧାତା ପରମେଶ୍ୱର ମହାରାଜ ବିକ୍ରମ ଦେବ ବର୍ମାଙ୍କୁ ଶତାୟୁ କଲେ ତାଙ୍କ ଦ୍ୱାରା ଜୟପୁରର ବିଶେଷତଃ ସମଗ୍ର ଉତ୍କଳର ଅନେକ ଆଶା ଏବଂ ମହତ୍ତ୍ୱ ଅଭାବ ପୂର୍ତ୍ତି ହୋଇପାରିବ । ଅନନ୍ତ କରୁଣାମୟ, ମର୍ତ୍ତ୍ୟବୈକୁଣ୍ଠବାସୀ ମହାପ୍ରଭୁ ଜଗନ୍ନାଥ ତାହାହିଁ କରନ୍ତୁ । ତାଙ୍କ ଦୟା ସଜଳ ଶ୍ରୀପଦସରୋଜରେ ଉତ୍କଳର ଏହି ଭିକ୍ଷା, ଏହି ଅଳି । ଶ୍ରୀ ଶୁଭମସ୍ତୁ । ସାହିତ୍ୟସମ୍ରାଟ, ରାଜକବି ମହାରାଜ ବିକ୍ରମ ଦେବଙ୍କ ଭଳି ଜଣେ ସର୍ବଗୁଣଧର, ଦେଶବରେଣ୍ୟ ଆଦର୍ଶ ରାଜପୁରୁଷଙ୍କର ପବିତ୍ର ଜୀବନଚିତ୍ର ଅଙ୍କନ କରି ଲେଖକ ନିଜକୁ କୃତାର୍ଥ ମଣୁଅଛି । ଏହି ପୁସ୍ତକ ଖଣ୍ଡି ଲେଖକଙ୍କର ଜୀବନସାଧନାର ସ୍ମୃତିନିଦର୍ଶନ ସ୍ୱରୂପ । ଏହା ରାଜଜୀବନର ଚିତ୍ର ନୁହେଁ ଋଷି ଜୀବନର ଆଧ୍ୟାତ୍ମିକ ଚିତ୍ର ।

ମହାଜନମାନଙ୍କ ଜୀବନର ଅନେକ ମୂଲ୍ୟବାନ୍ କଥା ପ୍ରଚ୍ଛନ୍ନରେ ରହିଯାଏ, କାଳ ତାହା ପ୍ରକାଶ କରିଦିଏ ନାହିଁ । କାହିଁକି ଦିଏନାହିଁ, ତାହା ସ୍ୱୟଂ ସେହି କାଳ ସୁଦ୍ଧା ଜାଣେ କି ନାହିଁ ସନ୍ଦେହ । କାଳର ଲୀଳା ରହସ୍ୟ ତାହାର ନିଜ ସୃଷ୍ଟି ନୁହେଁ, ତାହା ଅନ୍ୟର ଆଦେଶ ପାଳନ ମାତ୍ର । ମହାଜନ ଜୀବନର ଯେଉଁ ଘଟଣାଗୁଡ଼ିକ ଲୋକସମୂହରେ ଗୋଚରୀଭୂତ, ତାହାକୁ ନେଇ ଜୀବନୀ ଗଠିତ ହୁଏ । ସମୟର ବହୁଳ ସ୍ତରରେ ଯାହା ନିବିଡ଼ ଭାବରେ ପୋତି ହୋଇ ପଡ଼ିଅଛି, ତାହାର ଉଦ୍ଧାର ଅସମ୍ଭବ । ମନୁଷ୍ୟ ଜୀବନରେ କର୍ମଚଞ୍ଚଳତା

ଅନେକ ଆସେ, ମାତ୍ର ରହେ କେତୋଟି ? ଗଛରେ ଅନେକ ଫୁଲ ଫୁଟେ, କିନ୍ତୁ ସବୁ ରହେ ନାହିଁ । କେତେଗୁଡ଼ାଏ ଝଡ଼ିପଡ଼େ—କାହିଁକି ଝଡ଼ିପଡ଼େ ତାହା କିଏ କହିବ ? ମହାରାଜ ବିକ୍ରମ ଦେବ ବର୍ମଙ୍କ ଜୀବନରେ ଏରୂପ କେତେ କର୍ମଚିକୀର୍ଷା ଯେ ବିସ୍ମୃତି ଗର୍ଭରେ ଲୁକ୍କାୟିତ ନାହିଁ ତାହା କଦାଚ ସମ୍ଭବପର ନୁହେଁ । ଅତୀତର କୃଷ୍ଣ ଯବନିକା ଅନ୍ତରାଳରେ କେତେ ମୂଲ୍ୟବାନ ମୋତି-ମାଣିକ୍ୟ ଯେ ଢାଙ୍କି ହୋଇ ନ ରହିବ, ତାହା ବୋଲାଯାଇ ନ ପାରେ । ବର୍ତ୍ତମାନ ଯେତିକି ସଂଗୃହୀତ ହୋଇଅଛି ତାହାହିଁ ସମ୍ବଳ । ତାହା ଛଡ଼ା ଆହୁରି ଅନେକ ଥାଇପାରେ । ମନୁଷ୍ୟର ଅଜ୍ଞାତରେ ମଧ୍ୟ ଅନେକ କାର୍ଯ୍ୟ ହୋଇଯାଏ । ମନୁଷ୍ୟ ଅଜ୍ଞାତରେ ଅନେକ ପାପ କରେ, ସେହିପରି ଅଜ୍ଞାତରେ ଅନେକ ପୁଣ୍ୟ ମଧ୍ୟ କରେ । ସେ ଅଭ୍ୟାସ ଯୋଗରେ ଯନ୍ତ୍ର ହୋଇ କାର୍ଯ୍ୟ କରିଯାଏ, ସେହି କାର୍ଯ୍ୟ ମଧ୍ୟରେ ତାହାର ପାପ ସଞ୍ଚୟ ହେଉଥାଏ, ପୁଣ୍ୟ ବି ସଞ୍ଚୟ ହେଉଥାଏ, ମାତ୍ର ସେ ତାହା କିଛି ଜାଣିପାରେ ନାହିଁ । ସେ ଆଡ଼କୁ ତାହାର ଦୃଷ୍ଟି ବି ନ ଥାଏ । ମାନବର ଅଲକ୍ଷ୍ୟରେ ପ୍ରକୃତି ତାହା ଦ୍ୱାରା କେତେ କାର୍ଯ୍ୟ କରାଇନିଏ । ଏହି ସୂତ୍ରରେ ବେଳେ ବେଳେ ମନୁଷ୍ୟ କେଉଁ ମହତ୍ କାର୍ଯ୍ୟ କରିଯାଏ, ତାହା ଜାଣିବାର ଉପାୟ କିଛି ନାହିଁ । ଶାସ୍ତ୍ର ପୁରାଣରେ ମଧ୍ୟ ଏ ରୂପ ଦୃଷ୍ଟାନ୍ତ ବିରଳ ନୁହେଁ । କିଏ ଖାଇବାକୁ ନ ପାଇ ରାତିରେ ଉପାସ ରହିଲା; ମାତ୍ର ସେ ଦିନ ଏକାଦଶୀ ବ୍ରତ ଥିବାରୁ ସେ ବ୍ରତର ଫଳ ପାଇଲା । କିଏ ଶୋଇବା ପାଇଁ ଦେବାଳୟ ପରିଷ୍କାର କଲା, କିନ୍ତୁ ଦେବାଳୟ ମାର୍ଜନର ପୁଣ୍ୟଫଳ ଦେହାନ୍ତରେ ଭୋଗ କଲା । ଖୋଜିଲେ ଏଭଳି ଦୃଷ୍ଟାନ୍ତ ପ୍ରଚୁର ମିଳିବ, ମହାଜନମାନେ ଜୀବନର ଘଟଣାବଳୀ ନିଜ ମୁଖରେ ପ୍ରକାଶ କରନ୍ତି ନାହିଁ, ସେଥିରେ ଆତ୍ମଶ୍ଲାଘା ହୁଏ ବୋଲି ବୋଧ ହୁଏ ସେମାନଙ୍କର ଧାରଣା । ତାହା ହେଉ ପଛେ, ମାତ୍ର ତାଙ୍କ ଜୀବନୀରୁ ସାଧାରଣ ଯେଉଁ ଶିକ୍ଷା ଉପଦେଶ ଲାଭ କରିବେ, ସେଥିରୁ ତାଙ୍କୁ ବଞ୍ଚିତ କରିବା ଉଚିତ ନୁହେଁ । ମହାଜନର କାର୍ଯ୍ୟକଳାପ ଇତର ସାଧାରଣ ପକ୍ଷରେ ପରମ ଆଦର୍ଶ । ସେହି ଆଦର୍ଶକୁ ଲୁଚାଇ ରଖିବା ସମାଜ ପକ୍ଷରେ କ୍ଷତିର ବିଷୟ । ଏକ ଆଡ଼େ ସେମାନେ ଆତ୍ମ-ପ୍ରତିଷ୍ଠା ଢାଙ୍କିବାକୁ ଯାଇ ଅନ୍ୟ ଆଡ଼େ ଲୋକଙ୍କୁ ମହାରତ୍ନ ଦାନରୁ ବାରଣ କରିବା ପରି ହୁଏ । ଏହି ସବୁ ବିଷୟ ଗମ୍ଭୀର ଭାବରେ ଚିନ୍ତା କଲେ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, କେହି କାହାର ଜୀବନୀ ପୂର୍ଣ୍ଣାଙ୍ଗ ରୂପେ ପ୍ରକାଶ କରିପାରେ ନାହିଁ । ଜୀବନର ଅନେକ ଘଟଣା ପ୍ରଚ୍ଛନ୍ନରେ ରହିଯାଏ । ବିଶେଷତଃ

ମହାଜନଜୀବନ ମହାସମୁଦ୍ର ତୁଲ୍ୟ ଅଗାଧ ଅନନ୍ତ, ସେଥିରୁ ସମସ୍ତ ରତ୍ନ ସଂଗ୍ରହ ମାଳ ଗୁନ୍ଥିବା ଅସମ୍ଭବ ।

ଜୟପୁରାଧୀଶ୍ୱରୀ ମହାରାଣୀ ଶ୍ରୀଯୁକ୍ତ ହୀରା ଦେବୀ ପଟ୍ଟମହାଦେବୀ ମହାରାଜ ଶ୍ରୀରାମ ଦେବ ବର୍ମାଙ୍କର ଉପଯୁକ୍ତ ସହଧର୍ମିଣୀ । ଉଭୟଙ୍କର ମିଳନ ଶିବଦୁର୍ଗାଙ୍କର ମଙ୍ଗଳମିଳନ ପରି ଶୁଭପ୍ରଦ । ବିଧାତା ଯୋଗ୍ୟ ସଙ୍ଗରେ ଯୋଗ୍ୟର ମିଳନ ଘଟାଇଅଛନ୍ତି । ପତି ଯେଉଁପରି ତପସ୍ୱୀ; ପତ୍ନୀ ସେହିପରି ତପସ୍ୱିନୀ । ବାସ୍ତବରେ ଏ ମିଳନ ପ୍ରେମ ଭକ୍ତିର ପବିତ୍ର ମିଳନ ବା ସତ୍ୟ ସହ ମୁକ୍ତିର ମଧୁର ମିଳନ । ମହାରାଣୀ ମହୋଦୟା ଧର୍ମାନୁଷ୍ଠାନରେ ସ୍ୱାମୀଙ୍କର ଉତ୍ତର-ସାଧିକା । ଓଷା, ବାର, ମୁନେଇ, ପର୍ବରେ ଅଧିକାଂଶ ଦିନ ତାଙ୍କର ଉପବାସରେ ବ୍ୟୟିତ ହୁଏ । ସେ ରାଜରାଣୀ ହୋଇ ସୁଦ୍ଧା ସ୍ୱାମୀଙ୍କର ସେବାଦାସୀ ପରି ନିଜକୁ ମଣନ୍ତି । ତା ନ ହେବ ବା କାହିଁକି ? ଯେଉଁ ରାଜମହର୍ଷି କୁଳରେ ଭ୍ରାତସୂତା ସୀତା, ସାବିତ୍ରୀ, ଦମୟନ୍ତୀ ପ୍ରଭୃତି ଜାତ ହୋଇ ନାରୀଧର୍ମର ଉଚ୍ଚାଦର୍ଶ ପ୍ରଦର୍ଶନ ଦ୍ୱାରା ଜଗତକୁ ସ୍ତବଧ ମୁଗଧ କରିଯାଇଅଛନ୍ତି, ସେହି କୁଳରେ ତ ମହାରାଣୀ ହୀରା ଦେବୀ ଜନ୍ମଲାଭ କରିଅଛନ୍ତି । ହୀରାକର ଖଣିରୁ ହୀରାକରର ହିଁ ସମ୍ଭବ ଥିଲା । ଏ କାଳରେ ସ୍ୱାମୀ ସେବା ଚାକର ଦ୍ୱାରା କଲେ ଅନେକ ଗୃହିଣୀ ରାଣୀ ପାଲଟିଯାଉ ଅଛନ୍ତି । ପୁଣି ସ୍ୱାମୀ ସେବାକୁ ମାନହାନିକର ବୋଧ କରୁଅଛନ୍ତି, କିନ୍ତୁ ପାଟ ମହାଦେବୀ ହୀରାଦେବୀ ମହାରାଣୀ ହୋଇ ସୁଦ୍ଧା ବହୁ ଦାସଦାସୀ ସତ୍ତ୍ୱେ ନିଜ ହାତରେ ସ୍ୱାମୀସେବା ନ କଲେ ତୃପ୍ତ ହୁଅନ୍ତି ନାହିଁ । ତାଙ୍କୁ ସ୍ୱହସ୍ତରେ ଅନେକ ଦେବଦେବୀଙ୍କର ପୂଜା ମଧ୍ୟ କରିବାକୁ ହୁଏ । ମହାରାଣୀ ଦୟାର ଅବତାର, ଦୁଃଖୀର ଦୁଃଖ ଦେଖିଲେ ସମବେଦନାରେ ତାଙ୍କର ନେତ୍ର ଅଶ୍ରୁପ୍ଲାବିତ ହୋଇଉଠେ । ଅନାଥ ଅକ୍ଷମଙ୍କୁ ଅନ୍ନପୂର୍ଣ୍ଣା ରୂପରେ ଅନ୍ନ ବିତରଣ ସଙ୍କାଶେ ବୋଧ ହୁଏ ସେ ବିଧିପ୍ରେରିତା । ଦାସ ଦାସୀମାନଙ୍କୁ ସେ ପୁତ୍ର କନ୍ୟା ପରି ସ୍ନେହ କରନ୍ତି । ସେମାନଙ୍କୁ ହେୟ ବା ଇତର ମଣିବା ଦୂରେ ଥାଉ ସେମାନଙ୍କ ପ୍ରତି ପଦେ କଟୁ କଥା ବି ପ୍ରୟୋଗ କରନ୍ତି ନାହିଁ । ଜପ, ଧ୍ୟାନ, ପୂଜା ପ୍ରଭୃତିରେ ତାଙ୍କର ଅଧିକାଂଶ ସମୟ ଅତିବାହିତ ହୁଏ । ଦେବୀ ଆଖ୍ୟା ତାଙ୍କଠାରେ ବର୍ଣ୍ଣେ ବର୍ଣ୍ଣେ ସତ୍ୟ ଏବଂ ସାର୍ଥକ ।

ଜୟପୁରାଧୀଶ୍ୱରୀ ମହାରାଣୀ ହୀରାଦେବୀ ପଟ୍ଟମହାଦେବୀ ସ୍ୱହସ୍ତରେ ପ୍ରତ୍ୟହ ମହାଲକ୍ଷ୍ମୀ ଏବଂ ଦୁର୍ଗାଦେବୀଙ୍କର ପୂଜା କରନ୍ତି । ଅନ୍ୟ ଦ୍ୱାରା କରାଇଲେ

ତାଙ୍କର ତୃପ୍ତ ହୁଏ ନାହିଁ ତାଙ୍କର ମନୋମତ ପୂଜା ମଧ କେହି କରିପାରିବେ ନାହିଁ । ମାଆ ନିଜ ହାତରେ ପୁତ୍ରକନ୍ୟାମାନଙ୍କୁ ନ ଖୁଆଇଲେ ତାହର ମନ ବୋଧ ହୁଏ ନାହିଁ, କି ଶିଶୁ ସନ୍ତାନଙ୍କର ମନ ବୋଧ ହୁଏ ନାହିଁ । ମହାରାଣୀଙ୍କର ଦେବଦେବୀ ପୂଜାମୂଳରେ ଏହି ବିଶ୍ୱାସ ଦୃଢ଼ୀଭୂତ । ଯାହାଙ୍କର ଭାବ, ଭକ୍ତି ଏଭଳି ଗଭୀର ତାଙ୍କର ଧର୍ମସାଧନା କରୁପ ପଚେକ୍ସ ଏବଂ ଉଚ୍ଚସ୍ତରରେ ଅଧିରୂଢ଼, ତାହା ଭାବୁକ ମାନେ ଉପଲବ୍ଧି କରିପାରିବେ । ଯେ ଧର୍ମକୁ ପ୍ରାଣରେ ମିଶାଇନେଇପାଏ, ଏପରି ଉଚ୍ଚ ଭାବ କେବଳ ତାହାର ହୋଇପାରେ, ସେହି ଏକାଧର୍ମର ଗଭୀର ମର୍ମ ଏବଂ ସୂକ୍ଷ୍ମ ଅର୍ଥର ସ୍ୱରୂପ ଅବଗତ । ମନ୍ତ୍ର ଆବୃତ୍ତି କରି ଗତାନୁଗତିକ ରୂପେ ପୂଜାକଲେ ପ୍ରକୃତ ପୂଜା ହୁଏ ନାହିଁ । ଭାବବିଶାରେ ବିଭୋଳ ହୋଇ ଯେ ସ୍ୱପ୍ନ ଦେଖିଲା ପରି ପୂଜା କଲେ, ତାହାର ପୂଜା ଦେବତା ଗ୍ରହଣ କରନ୍ତି । ପ୍ରତି ରବିବାରରେ ମହାରାଣୀ ସୂର୍ଯ୍ୟପୂଜା କରନ୍ତି । ସେ ଦିନ ହବିଷ୍ୟାନ୍ନ ଭୋଜନ ଥରେ ମାତ୍ର ହୁଏ । ସେ ହିନ୍ଦି, ଓଡ଼ିଆ ଓ ତେଲୁଗୁ ଭାଷା ଭଲ ରୂପେ ଲେଖି ପଢ଼ି ପାରନ୍ତି । ପୁରାଣ ଓ ଧର୍ମଗ୍ରନ୍ଥମାନ ନିଜେ ନିଜେ ପାଠ କରନ୍ତି । ସେ ଆଦର୍ଶ ଗୃହିଣୀ ଏବଂ ଆଦର୍ଶ ତପସ୍ୱିନୀ । "ଯଥାକୁଳେ ଜନ୍ମ ତଥା ଗରିଷ୍ଠ" ଏ ମହାବାଣୀ ତାଙ୍କଠାରେ ସଫଳ ଓ ସାର୍ଥକ ହୋଇଅଛି ।

ମହାରାଣୀ ହୀରା ଦେବୀ ପ୍ରସିଦ୍ଧ ଚୌହାନ ରାଜବଂଶଜା । ତାଙ୍କ ପିତାଙ୍କର ନାମ ୬ ନରହରି ସିଂହ ଦେବ । ସେ ବଲାଙ୍ଗୀରପାଟଣା ରାଜ୍ୟର ତତ୍କାଳୀନ ମହାରାଜଙ୍କର ପିତୃବ୍ୟପୁତ୍ର । ଚୌହାଣ ରାଜବଂଶ ବହୁଶ ଗୋଷ୍ଠୀୟ କୁଳୀନ କ୍ଷତ୍ରିୟ । ଜୟପୁର ରାଜବଂଶ ସୂର୍ଯ୍ୟବଂଶୀୟ ବିଶୁଦ୍ଧ କ୍ଷତ୍ରିୟ । ସେମାନଙ୍କର ଭରଦ୍ୱାଜ ଗୋତ୍ର । ମହାରାଣୀ ମହୋଦୟା ଚୌହାଣ ବଂଶରୁ ଆସି ଜୟପୁର ସୂର୍ଯ୍ୟବଂଶ ଆଲୋକିତ କରିଅଛନ୍ତି । ତାଙ୍କ ଯୋଗୁ ଉଭୟ ମହାବଂଶର ମଙ୍ଗଳ-ମିଳନ ସମ୍ଭବ ହୋଇଅଛି । ତାଙ୍କର ପିତୃକୁଳ, ପତିକୁଳ ଉଭୟ ପବିତ୍ର ଏବଂ ପ୍ରାଚୀନ । ଏ ଦୁଇଟି ପ୍ରସିଦ୍ଧ ବଂଶର ମିଳନ ମଣିକାଞ୍ଚନ ଅଥବା ଗଙ୍ଗାଯମୁନାର ସଂଯୋଗ ତୁଲ୍ୟ । ଗୁଣଧନ୍ୟା ଜୟପୁରାଧୀଶ୍ୱରୀ ନିଜଗୁଣରେ ପିତୃକୁଳ ପତିକୁଳ ଉଭୟ କୁଳ ଧନ୍ୟ କରିଅଛନ୍ତି । ସେ ମୂର୍ତ୍ତିମତୀ କରୁଣା ପରି ଜୟପୁରର ରାଜ-ସିଂହାସନରେ ଅଧିଷ୍ଠିତା । କାହାରି ଦୁଃଖ ବିପଦ ଶୁଣିଲେ ତାଙ୍କର କୋମଳ ପ୍ରାଣରେ ଆଘାତ ଲାଗେ । ସେ ସ୍ୱତଃପ୍ରବୃତ୍ତ ହୋଇ ବିପନ୍ନଙ୍କୁ ଉଦ୍ଧାର କରିବା ପାଇଁ ଚେଷ୍ଟା କରନ୍ତି । ଅନେକେ ତାଙ୍କର ଅଯାଚିତ ଦାନରେ ଋଣୀ । ଶୁଦ୍ଧଚିତ୍ତ

ନିଃସ୍ୱାର୍ଥ ଦାନ ତାଙ୍କ ଦେବୀମହିମାର ବିଶେଷତ୍ୱ । ଦାସଦାସୀମାନଙ୍କର କୌଣସି ରୋଗ ପୀଡ଼ା ହେଲେ ସେ ଗର୍ଭଧାରଣୀ ଜନନୀ ପରି ଅତ୍ୟନ୍ତ ଉଦ୍‌ବିଗ୍ନା ହୋଇ-ପଡ଼ନ୍ତି ଏବଂ ତତ୍‌କ୍ଷଣାତ୍ ସେଥିର ପ୍ରତିକାର କରନ୍ତି । ନିଜେ ରୋଗୀର ଶଯ୍ୟାରେ ବସି ବିବିଧ ସାନ୍ତ୍ୱନା ଦ୍ୱାରା ତାହାର ରୋଗଯନ୍ତ୍ରଣା ଅଧେ ହରଣ କରିନିଅନ୍ତି । ଔଷଧଠାରୁ ସାନ୍ତ୍ୱନା ଦ୍ୱାରା ରୋଗର ଅନେକ ଉପଶମ ହୁଏ, ଏହା ବୋଲିବା ଅତ୍ୟୁକ୍ତି ନୁହେଁ । ରୋଗୀର ଆତୁର ପ୍ରାଣ ଠିକଏ ସାନ୍ତ୍ୱନା ଖୋଜେ, ସେହି ସାନ୍ତ୍ୱନା ତା ପକ୍ଷରେ ମହୌଷଧିର କାର୍ଯ୍ୟ କରେ । ମହାରାଜାଙ୍କର ଅତିଥି-ସତ୍କାରରେ ମହାରାଣୀଙ୍କର ସହାୟତା ଯଥେଷ୍ଟ ପରିଲକ୍ଷିତ ହୁଏ । ଅତିଥି ପାଇଁ ମହାରାଜଙ୍କର ସ୍ୱତନ୍ତ୍ର ସୁବ୍ୟବସ୍ଥା ଅଛି । ସେ ବ୍ୟବସ୍ଥାରେ ଅତିଥି ମଧ୍ୟ ରାଜସୁଖ ଉପଭୋଗ କରେ; ତଥାପି ନିଅନ୍ତରୁ ଖଜା, ପିଠା, ନାନା ପ୍ରକାର ବଡ଼ି ଏବଂ ଆଚାର ପ୍ରଭୃତି ଅତିଥି ନିମନ୍ତେ ପ୍ରେରିତ ହୁଏ ; ସୁତରାଂ ଅତିଥି ଦୁଇଗୁଣ ସତ୍କାର ଲାଭ କରେ । ଜଣେ ଅତିଥି ପାଇଁ ଯେଉଁ ସବୁ ସାମଗ୍ରୀ ଆସେ, ତାହା ଦଶଜଣର ଉପଯୁକ୍ତ । ରାଜସମ୍ମାନ ଏହି ପରି ଆଡ଼ମ୍ବରପୂର୍ଣ୍ଣ । ରାଜହୃଦୟ ଏହି ପରି ଉଦାର ଏବଂ ମହତ୍ । ଯେ ଜୟପୁରରେ ଅତିଥି ହୋଇଥିବ ସେ ଏହା ନିଶ୍ଚୟ ଅନୁଭବ କରିଥିବ । ମହାରାଣୀ ପ୍ରତି ଏକାଦଶୀ ବ୍ରତ ପାଳନ କରନ୍ତି ଏବଂ ଅନେକ ଅନାଥ ବିଧବାଙ୍କୁ ସ୍ୱହସ୍ତରୁ ଉପବାସର ସାମଗ୍ରୀ ଖର୍ଚ୍ଚ ପ୍ରଦାନ କରନ୍ତି । ନିଜେ କରିବା ଅପେକ୍ଷା ଅନ୍ୟଙ୍କୁ ପ୍ରବର୍ତ୍ତାଇବାର ମୂଲ୍ୟ ଅଧିକ । ଧର୍ମ କର୍ମରେ ଯେ ପ୍ରେରଣା ଦିଅନ୍ତି ତାଙ୍କର ପୂଣ୍ୟ ଅଧିକ ହୁଏ । ଯେ ନିଜେ କରନ୍ତି, ପୁଣି ଅନ୍ୟଙ୍କୁ କରାନ୍ତି ସେ ଦୁଇଗୁଣ ଫଳଲାଭର ଅଧିକାରୀ ହୁଅନ୍ତି । ପ୍ରତ୍ୟେକ ରାଜଦମ୍ପତି ପ୍ରଜାପୁଞ୍ଜର ଧର୍ମ ପ୍ରବର୍ତ୍ତକ ତାଙ୍କର ଧର୍ମକାର୍ଯ୍ୟ ପ୍ରଜାଙ୍କର ଅନୁ-କରଣୀୟ ହୁଏ । ଜୟପୁର ଅବସ୍ଥାନ କାଳରେ ମହାରାଣୀଙ୍କର ଏହିସବୁ ସଦ୍‌ଗୁଣାବଳୀର ଜନବାଦ ଲେଖକର ଶ୍ରୁତିଗୋଚର ହୋଇଥିଲା ।

—୦—

## ଦ୍ୱାଦଶ ପରିଚ୍ଛେଦ

ଜୟପୁର ପ୍ରଥମେ ଗୋଟିଏ କ୍ଷୁଦ୍ର ରାଜ୍ୟ ଥିଲା । ପାର୍ଶ୍ୱବର୍ତ୍ତୀ ରାଜ୍ୟମାନ ଜୟ କରି କ୍ରମେ ବିସ୍ତୃତତର ଆକାର ଧାରଣ କଲା । ସେତେବେଳେ ବୃହତ୍ତମ ରାଜ୍ୟର ରାଜଧାନୀ ରାଜ୍ୟର କେନ୍ଦ୍ରସ୍ଥଳକୁ ଉଠାଇ ନେବାର ଆବଶ୍ୟକ ହେଲା । ଏହି ସୂତ୍ରରେ ପ୍ରଥମେ ନନ୍ଦପୁର, ପରେ ନାରାୟଣପୁର ପାଟଣା ଏବଂ ଶେଷରେ ଜୟପୁର ରାଜଧାନୀ ହେଲା । ଅନେକ ରାଜ୍ୟ ଜୟ କରିବାଦ୍ୱାରା ତାହା ବିପୁଳ ବିସ୍ତୃତାକାର ଧାରଣ କଲା । ବୋଧ ହୁଏ ସେହି ଜୟପୁର ସ୍ମୃତି ସ୍ୱରୂପ ରାଜ୍ୟ ଏବଂ ରାଜଧାନୀର ନାମ ଜୟପୁର ହୋଇଥିବ । ଜୈନ ନଗରର ନାମାନୁସାରେ ଜୟପୁର ହୋଇଅଛି ବୋଲି ପୂର୍ବରେ ଲିଖିତ ହୋଇଅଛି, ମାତ୍ର ତାହା ପ୍ରାମାଣିକ ବୋଲି ବିଶ୍ୱାସ ହୁଏ ନାହିଁ । ଜୈନ ନଗର ଗୋଟିଏ କ୍ଷୁଦ୍ରଗ୍ରାମ ମାତ୍ର । ନିକଟରେ ବଡ଼ ବଡ଼ ପର୍ବତ ଜଳ ପ୍ରପାତ ପ୍ରଭୃତି ପ୍ରକୃତିର ମହାଶକ୍ତି ବିଦ୍ୟମାନ ଥାଉଁ ଥାଉଁ ବିରାଟ ରାଜ୍ୟର ରାଜଧାନୀର ନାମକରଣ ଗୋଟାଏ କ୍ଷୁଦ୍ର ପଲ୍ଲୀର ନାମାନୁସାରେ ହେବା ଅସମ୍ଭବ ବୋଧ ହୁଏ । ଜୈନ ନଗରରୁ ଜୈ-ନଗର ବା ଜୟନଗର ହେବା ସମୀଚୀନ ହୋଇପାରେ, ମାତ୍ର ଜୟପୁର ହେବା ସମୀଚୀନ ନୁହେଁ । ନଗରର ଅପଭ୍ରଂଶ ନଗର ବା ନଅର ହୁଏ, ମାତ୍ର ପୁର ହେବା ଅସ୍ୱାଭାବିକ । କିମ୍ବା ଜୟପୁର ନାମର ଅନ୍ୟ କୌଣସି କାରଣ ଥିଲେ, ତାହା ଐତିହାସିକ ବା ପ୍ରତ୍ନତତ୍ତ୍ୱଜ୍ଞମାନଙ୍କର ଅନୁସନ୍ଧେୟ । ଜୟପୁର ରାଜ୍ୟର ପରିମାଣ ତେର ହଜାର ବର୍ଗମାଇଲ ଏବଂ ଲୋକସଂଖ୍ୟା ଦଶଲକ୍ଷରୁ ଅଧିକ । ସେଥିମଧ୍ୟରେ ଓଡ଼ିଆ ଓ ଓଡ଼ିଆଭାଷୀ ଆଦିମଜାତିର ସଂଖ୍ୟା ଶତକଡ଼ା ୯୬ ଜଣ । ଏହି ଆଦିମ ଜାତିମାନେ ଖାଲି ଓଡ଼ିଆରେ କଥା କହନ୍ତି ନାହିଁ, ଓଡ଼ିଆ ଜାତିର ଆଚାର ବ୍ୟବହାରରେ ମଧ୍ୟ ସେମାନେ ସମ୍ପୂର୍ଣ୍ଣ ଅଭ୍ୟସ୍ତ । ବିଶେଷତଃ ସେମାନେ ନିଜକୁ ଓଡ଼ିଆ ବୋଲି ପରିଚୟ ଦେବାକୁ ଗର୍ବ ଗୌରବ ଅନୁଭବ କରନ୍ତି । ତେଲୁଗୁ, ମୁସଲମାନ ପ୍ରଭୃତି ଜାତିର ସଂଖ୍ୟା ଶତକଡ଼ା ଚାରିଜଣ ମାତ୍ର । ସେମାନେ ଚାକିରି ଏବଂ ବ୍ୟବସାୟ ସୂତ୍ରରେ ଆସି ରହିଯାଇଅଛନ୍ତି । ଜୟପୁର ବର୍ଷର ଆୟ ପ୍ରାୟ ୬୦ ଲକ୍ଷ । ଜମି ବନ୍ଦୋବସ୍ତ ହୋଇ ନ ଥିବାରୁ ଭୂମିକର ଖୁବ ଅଳ୍ପ ଆଦାୟ ହୁଏ । ପ୍ରଜା ସ୍ୱୀୟ ଉତ୍ପନ୍ନ ଶସ୍ୟରୁ ଅତି ଅଳ୍ପ ଅଂଶ ମାତ୍ର ରାଜକର ରୂପେ ପ୍ରଦାନ କରେ, ମାତ୍ର ବନ୍ୟ ବିଭାଗରୁ ଅଧିକ ଆୟ ହୁଏ । ଉପଯୁକ୍ତ ବ୍ୟବସ୍ଥା ହେଲେ ରାଜ୍ୟର ଆୟ ଆହୁରି ଅନେକ

ଦେଶମାନେରେ ବଢ଼ିଉଠିବ, ଏଥିରେ ସନ୍ଦେହ ନାହିଁ । ତୁମମାନଙ୍କଠାରୁ ଯେଉଁ ନାମ ମାତ୍ର ଭୂମିକର ଆଦାୟ ହୁଏ, ତାହା ରାଜ୍ୟର ବିଶାଳତା ତୁଳନାରେ ସମୁଦ୍ରରୁ ଶଙ୍ଖେ ମାତ୍ର । ଯଥାମତ ମାପହୋଇ ବନ୍ଦୋବସ୍ତ ହେଲେ ତାହା ମଧ୍ୟ ବହୁଗୁଣ ବଢ଼ିଉଠିବ ।

ଜୟପୁର ଇତିହାସ ପ୍ରସିଦ୍ଧ ଓଡ଼ିଆ ରାଜ୍ୟ । ଜୟପୁର ଅନ୍ତର୍ଗତ କୋଟ-ପାଡ ସହରରେ ଓଡ୍ର ରାଜାଙ୍କ ଦୁର୍ଗର ଭଗ୍ନାବଶେଷ ଦେଖାଯାଏ । କୋଟପାଡର ପ୍ରକାଣ୍ଡ ଦମୟନ୍ତୀ ଜଳାଶୟ କୌଣସି ଓଡ଼ିଆ ରାଜାଙ୍କର କୀର୍ତ୍ତି ବୋଲି ଅଦ୍ୟାପି ଲୋକ ମୁଖରେ ଘୋଷିତ ହେଉଅଛି । ଏହି ସବୁ ପ୍ରମାଣରୁ ବୁଝାଯାଏ, କୋଟପାଡ ଓଡ୍ର ରାଜ୍ୟର ରାଜଧାନୀ ଥିଲା । ଉତ୍କଳର ସୁନାମ ପ୍ରସିଦ୍ଧ ଐତି-ହାସିକ ଶ୍ରୀଯୁକ୍ତ ବ୍ରଜବନ୍ଧୁ ଦାସ, ବି. ଏ., ବି.ଏଲ୍. ମହୋଦୟଙ୍କର "ଓଡ୍ର-ଜାତିର ପ୍ରସାର" ଶୀର୍ଷକ ପ୍ରବନ୍ଧ ୧୯ଶ ଭାଗ ଅଷ୍ଟମ ସଂଖ୍ୟାର "ମୁକୁର" ମାସିକ ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏ ପ୍ରବନ୍ଧରେ ବ୍ରଜବନ୍ଧୁ ବାବୁ ଯେଉଁ ସବୁ ପ୍ରମାଣ ଦେଖାଇଅଛନ୍ତି, ସେଥିରୁ ସ୍ପଷ୍ଟ ଅନୁମିତ ହୁଏ— ସମୟରେ କୋଟପାଡ ଓଡ୍ର ସାମ୍ରାଜ୍ୟର ରାଜଧାନୀ ଥିଲା । ବିଗତବର୍ଷର ଅଷ୍ଟମସଂଖ୍ୟକ "ରସଚକ୍ର"ରେ "ପ୍ରାଚୀନ ଉତ୍କଳର ରାଜ୍ୟ ବିଭାଗ" ଶୀର୍ଷକ ପ୍ରବନ୍ଧ ପ୍ରକାଶିତ ହୋଇଅଛି । ଲେଖକ ଶ୍ରୀଯୁକ୍ତ କେଦାରନାଥ ମହାପାତ୍ର, ବି. ଏ. ଲେଖିଛନ୍ତି— "ମହାବଂଶ, ଶୈଳବଂଶ ରାଜାମାନଙ୍କ ତାମ୍ର ଶାସନରୁ ନିଃସନ୍ଦେହରେ ପ୍ରମାଣିତ ହୁଏ, ବସ୍ତରର କେତେକାଂଶ ଜୟପୁର ରାଜ୍ୟ ଓ କଳାହାଣ୍ଡି ପ୍ରଭୃତି ଓଡ୍ର-ଦେଶ ନାମରେ ବହୁଦିନ ପର୍ଯ୍ୟନ୍ତ ଖ୍ୟାତି ଲାଭ କରିଥିଲା । ଜୟପୁରକୁ "ଆଟବୀ" ବୋଲି କୁହାଯାଏ । ଏହା କୋଶଳ ରାଜ୍ୟର ଦକ୍ଷିଣ ପଶ୍ଚିମରେ ଅବସ୍ଥିତ ଥିଲା । ଜୟପୁରର କୋଟପାଡ଼ବାଡି ଏହାର ରାଜଧାନୀ ଥିଲା । ଏଠାରେ ମେଢ଼, ମଣ୍ଡପ, ଜଗତି, ଦୁର୍ଗ, ମନ୍ଦିର ପ୍ରଭୃତିର ଭଗ୍ନାବଶେଷ ଅଛି । ଶୈଳବଂଶର ରାଜାମାନେ କୋଙ୍ଗଦରୁ ବିତାଡ଼ିତ ହୋଇ ଓଡ୍ର ଦେଶରେ ନସୁଣ୍ଡ ପାହାଡ ନିକଟରେ ରାଜଧାନୀ ସ୍ଥାପନ କରିଥିଲେ । ସେମାନେ ଖ୍ରୀଷ୍ଟୀୟ ୧୫ଶ ଶତାବ୍ଦୀ ପର୍ଯ୍ୟନ୍ତ ଜୟପୁର ଅଞ୍ଚଳରେ ରାଜତ୍ୱ କରୁଥିଲେ ସୋନପୁର, ପାଟଣା ପ୍ରଭୃତି ରାଜ୍ୟରେ ଥିବା ଓଡିଆମାନେ ଜୟପୁର ନିଜର ବାସସ୍ଥାନ ବୋଲି ପରିଚୟ ଦେଇଥାନ୍ତି ।

ଜୟପୁର ଯେ ବିଶୁଦ୍ଧ ଓଡ଼ିଆ ରାଜ୍ୟ ସେ ବିଷୟରେ ଅଧିକ ବାକ୍ୟ-ବ୍ୟୟ ଅନାବଶ୍ୟକ । ସେଥିର ଜ୍ୱଳନ୍ତ ପ୍ରମାଣ ଉତ୍କଳର ପ୍ରାଚୀନ ସ୍ମୃତି ଉଜ୍ଜ୍ୱଳ କରୁଅଛି । ଜୟପୁରର ରାଜା ଓଡ଼ିଆ, ପ୍ରଜା ଓଡ଼ିଆ, ରାଜ୍ୟର ନାମ ମଧ୍ୟ ଓଡ଼ିଆ ଭାଷାର ପ୍ରାଣ, ପ୍ରକୃତି ଅନୁସାରେ ଗଠିତ; ମାତ୍ର ଦୁଃଖର ବିଷୟ ସେଠାର ଓଡ଼ିଆ ଶକ୍ତି ଅତି କ୍ଷୀଣ ଏବଂ ଦୁର୍ବଳ । ପ୍ରତିବେଶୀ ତେଲୁଗୁ ଜାତିର ପ୍ରବଳ ପ୍ରଭାବରେ ଜୟପୁରର ଓଡ଼ିଆ ମୁଣ୍ଡ ଟେକିପାରୁ ନାହିଁ । କାଳକ୍ରମେ ଜୟପୁର ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ଆନ୍ଧ୍ରପ୍ରଦେଶର ଶାସନାଧୀନ ହୋଇଅଛି । ସେହି ହେତୁ ଆନ୍ଧ୍ରମାନେ ଜୟପୁରକୁ ଆନ୍ଧ୍ରପ୍ରଦେଶ ବୋଲି ଦାବୀ କରୁଅଛନ୍ତି ଏବଂ ବଳାତ୍କାରରେ ମାଡ଼ିବସିଅଛନ୍ତି । ସେମାନଙ୍କ ପ୍ରବଳ ପୀଡ଼ନରେ ଜୟପୁର ଓଡ଼ିଆର ଶ୍ୱାସ ରୁଦ୍ଧ ହୋଇ ଆସୁଅଛି । ଲତା ଆସି ବୃକ୍ଷକୁ ଆଲିଙ୍ଗନ କଲା-ବେଳେ ତାହାର କୋମଳ ସ୍ପର୍ଶ ବୃକ୍ଷକୁ ବଡ଼ ମଧୁର ବୋଧ ହୁଏ; ମାତ୍ର ଲତା ଯେତେବେଳେ ଶାଖା ପ୍ରଶାଖା ବିସ୍ତାର କରି ତାକୁ କଠୋର ବଜ୍ର ବେଷ୍ଟନରେ ଯାକି ଧରେ, ତେତେବେଳେ ସେ ଧାହି ମଧୁସୂଦନ ସ୍ମରଣପୂର୍ବକ ଅତି କଷ୍ଟରେ ଲତାଚ୍ଛାଦନ ଛିଦ୍ରପଥରେ ଗୋଟିଏ ଗୋଟିଏ ପତ୍ର ବାହାର କରି ଜୀବନ୍ମୃତ ଅବସ୍ଥାରେ କେବଳ ବଞ୍ଚିରହିବାକୁ ବାଧ୍ୟ ହୁଏ । ଜୟପୁର ଓଡ଼ିଆଙ୍କ ଦୁର୍ଗତି ଠିକ୍ ସେହିପରି ହୋଇଅଛି ।

ବର୍ତ୍ତମାନ ରାଜନୈତିକ ଓଡ଼ିଶାର ପରିମାଣ ଯେତେ, ଜୟପୁର ପ୍ରାୟ ତେତେ ଏଡ଼େ ବଡ଼ ବିଶାଳ ରାଜ୍ୟ ଓଡ଼ିଶାରୁ ବିଚ୍ଛିନ୍ନ ହୋଇରହିଅଛି । ସେଥିରେ ଓଡ଼ିଶାର ଅର୍ଦ୍ଧେ ଶକ୍ତି, ବଳ ଏବଂ ପ୍ରଭାବ ଊଣା ହୋଇଯାଉଅଛି । ଏଡ଼େ ବଡ଼ ବିଶାଳ ରାଜ୍ୟର ଅଧିବାସୀ ହୋଇ ଓଡ଼ିଆମାନେ ନେହ ଦାଉ ନାହାନ୍ତି, ଏ କ୍ଷୋଭ ରଖିବାର ସ୍ଥାନ ନାହିଁ । ଜୟପୁରକୁ ପାଇବା ପାଇଁ ଓଡ଼ିଶା ଆତୁର, ଓଡ଼ିଶାରେ ମିଶିବା ପାଇଁ ଜୟପୁର ତତୋଽଧିକ ବ୍ୟାକୁଳ; ତଥାପି ଏ ସମସ୍ୟାର ସମାଧାନ ହେଉ ନାହିଁ । ବିଂଶବର୍ଷାଧିକ କାଳ ହେଲା ଉତ୍କଳର ଜାତୀୟ ଶକ୍ତି ଉତ୍କଳ ସମ୍ମିଳନୀ ଜୟପୁର ପ୍ରଭୃତିକୁ ଓଡ଼ିଶାରେ ମିଶାଇବା ସକାଶେ ରାଜଦ୍ୱାରରେ ବାରମ୍ବାର ଆବେଦନ ନିବେଦନ, ପ୍ରାର୍ଥନା ଏବଂ ଦାବୀ କରିଆସୁଅଛି, ମାତ୍ର ପ୍ରତିବେଶୀ ପ୍ରବଳଜାତିର ପ୍ରବଳ ପ୍ରତିବନ୍ଧକ ହେତୁ ତାହା କାର୍ଯ୍ୟରେ ପରିଣତ ହୋଇପାରୁ ନାହିଁ । ପ୍ରତିବେଶୀ ପ୍ରତିବେଶୀ ଭାଇକୁ ସାହାଯ୍ୟ କରିବା ସିନା ଧର୍ମ, ମାତ୍ର ନିଜର ସ୍ୱାର୍ଥ ମୋହ କରିବା ପାଇଁ

ଭାଗରେ ସ୍ୱାର୍ଥ ଛଡ଼ାଇବାକୁ ଚେଷ୍ଟା କରିବା କୌଣସି ସଭ୍ୟ ଶିକ୍ଷିତ ଜାତି ପକ୍ଷରେ ନୈତିକ ଆଦର୍ଶର ପରିପନ୍ଥୀ ନୁହେଁ । ଜୟପୁର, ପାରଳା ସିଂହଭୂମ ପ୍ରଭୃତି ଓଡ଼ିଶାରେ ମିଶିଲେ କେବଳ ଓଡ଼ିଆମାନେ ଏକଶାସନାଧୀନ ହେବେ ନାହିଁ, କନ୍ଧ, ସାନ୍ତାଳ ପ୍ରଭୃତି ଆଦିମ ଜାତିମାନଙ୍କର ସୁଦ୍ଧା ଜାତୀୟ ମିଳନ ଘଟିବ । ସେଥିରେ ସେମାନଙ୍କର ଜାତୀୟ ଶକ୍ତି ପୃଥୁଳ ହେବ ଏବଂ ସେମାନେ କ୍ରମେ ଉନ୍ନତ ହୋଇ ଉଠିବେ ।

ଜୟପୁର ଓଡ଼ିଶା ମିଶ୍ରଣ ବିରୁଦ୍ଧରେ ତେଲୁଗୁମାନଙ୍କର ଆପତ୍ତି ନିତାନ୍ତ ମୂଲ୍ୟହୀନ । ଜୟପୁର ଓଡ଼ିଶାରେ ମିଶିଲେ ନୂତନ ପ୍ରଦେଶର ଅର୍ଥ ସଙ୍କଟ ବଢ଼ିଉଠିବ ବୋଲି ସେମାନଙ୍କର ଧାରଣା । "ଜୟପୁର ଉତ୍କଳ ଏଜେନ୍ସି ସମ୍ମିଳନୀର" ଦ୍ୱିତୀୟ ଅଧିବେଶନର ଅଭ୍ୟର୍ଥନା ସମିତିର ସଭାପତି ତାଙ୍କ ଭାଷଣରେ ତେଲଙ୍ଗାମାନଙ୍କର ଏହି ଧାରଣା ଅତିସୁନ୍ଦର ଭାବରେ ଖଣ୍ଡନ କରି-ଅଛନ୍ତି । ସେ କହିଅଛନ୍ତି—"ଜୟପୁର ନାନାବିଧ ଖଣିରେ ପୂର୍ଣ୍ଣ । ସେ ସବୁ ଉପଯୁକ୍ତ ମତେ କାର୍ଯ୍ୟକାରୀ କରିଦିଆଗଲେ ଜୟପୁର ନିଜର ରକ୍ଷଣା-ବେକ୍ଷଣ ଏବଂ ଉନ୍ନତି ନିମନ୍ତେ, ବ୍ୟୟ ଧନ ଛଡ଼ା ନୂତନ ଓଡ଼ିଶା ପ୍ରଦେଶର ଅର୍ଥାଭାବ ମୋଚନ କରିବା ନିମନ୍ତେ ମଧ୍ୟ ଅନେକ ପରିମାଣରେ ସହାୟ ହେବ ।" କେହି କେହି ଜୟପୁର ଶାସନ ସମ୍ବନ୍ଧରେ ପଥର ଅସୁବିଧା ଉଲ୍ଲେଖ କରନ୍ତି । ଏହା କେବଳ କଳ୍ପନାବିଳାସ ମାତ୍ର । ଜୟପୁରକୁ ରେଲ ସୁବିଧାରେ ଆସିପାରେ, ଏହା ପୂର୍ବରୁ ବୋଲାଯାଇଅଛି । ତାହା ଛଡ଼ା ଜୟପୁରଗଡ଼ରୁ ମଧ୍ୟ ଜୟପୁରକୁ ଅଳ୍ପ ବ୍ୟୟରେ ରେଲ ବାଟ ଫିଟିପାରେ । ଜୟପୁର ଓଡ଼ିଶାରେ ମିଶିଲେ ଓଡ଼ିଶାସରକାର ଅବଶ୍ୟ ପଥର ବ୍ୟବସ୍ଥା କରିବେ । ଆଉ ଗୋଟିଏ ହାସ୍ୟକର ଆପତ୍ତି ଏହି ଯେ, ଓଡ଼ିଶାରେ ମିଶିଲେ ଜୟପୁରର ବଣସବୁ କଟା ହୋଇଯିବ । ସୁତରାଂ ଆନ୍ଧ୍ର ଦେଶରେ ବୃଷ୍ଟିର ଅଭାବ ହେବ । କିନ୍ତୁ ଏହା ଗୋଟିଏ ବିଫଳ ସ୍ୱପ୍ନ । ଆଜିଯାଏ ମାନ୍ଦ୍ରାଜ ଅଧୀନରେ ରହି ଜଙ୍ଗଲ କଟା-ହୋଇନାହିଁ । ଓଡ଼ିଶାରେ ମିଶିଲେ ଓଡ଼ିଶା ସରକାର ଜଙ୍ଗଲ କାଟିପକାଇବେ, ପୁଣି ଇନ୍ଦ୍ର ଦେବତାଙ୍କର କୋପଦୃଷ୍ଟି ଆନ୍ଧ୍ରଦେଶ ଉପରେ ପଡ଼ିବ । ଏହା ବାଳକର କଳ୍ପନା ଛଡ଼ା ଆଉ କଅଣ ହୋଇପାରେ ? ଯେଉଁମାନେ ଏଭଳି ଆଶଙ୍କା ପୋଷଣ କରନ୍ତି ସେମାନେ ଧୈର୍ଯ୍ୟଧରି ଆଶ୍ୱସ୍ତ ହୁଅନ୍ତୁ, ଓଡ଼ିଶା ସରକାର ଆନ୍ଧ୍ରଦେଶ ସଙ୍ଗରେ ଏପରି ସଉତୁଣୀସୁଲଭ ହଠ କଦାପି ଲଗାଇବେ ନାହିଁ । ଓଡ଼ିଶା ସରକାର ବଣ କାଟିବେ, ମାତ୍ର ଇନ୍ଦ୍ର ଆନ୍ଧ୍ରଦେଶକୁ ସେଥିପାଇଁ

ଧାଣ୍ଡିବେ, ଏହା ଷଣ୍ଢ ଧାନଖାଇବା ଡର୍ରେ ବଳଦ ଛାଡ଼ିବା ନ୍ୟାୟ । ପେଟ ନ ଦେଖୁଣୁ ପିନ୍ଧିବା ଲୁଗା ମୁଣ୍ଡରେ ବାନ୍ଧିବା ବଡ଼ କୌତୁକର କଥା । ଏହିସବୁ ଯୁକ୍ତିକୁ [illegible] ନାହିଁ । ମାନ୍ଦ୍ରାଜ ସରକାର କହନ୍ତି "ଜୟପୁର ଅଞ୍ଚଳ [illegible]- କଲେ ଓଡ଼ିଶାସରକାର ତାହା ଦମନ କରିପାରିବେ ନାହିଁ ।" କାହିଁକି ପାରିବେ ନାହିଁ, ସେଥିର କିଛି କାରଣ ମଧ୍ୟ ମିଳୁ ନାହିଁ । କୋରାପୁଟରେ [illegible] ଅଛନ୍ତି । ପୁଣି କଟକ, ପୁରୀ ବ୍ରହ୍ମପୁରର ରେଳରେ ସୈନ୍ୟ ଆସିପାରିବାର ସୁବିଧା ମଧ୍ୟ ଅଛି, ଓଡ଼ିଶା ସରକାର ସହଜରେ ବିଦ୍ରୋହ ଦମନ କରିପାରିବେ । ମୟୂରଭଞ୍ଜ, କେନ୍ଦୁଝର ଏବଂ ଦଶପଲ୍ଲା ବିଦ୍ରୋହ ଦମନ ସକାଶେ ମାନ୍ଦ୍ରାଜରୁ ସୈନ୍ୟ ଡାକିବା ଆବଶ୍ୟକ ହୋଇନାହିଁ । ଏହିପରି ଯେଉଁ ଯୁକ୍ତି ବା ଆପତ୍ତିମାନ ପ୍ରଦର୍ଶିତ ହେଉଅଛି, ସେଥିମଧ୍ୟରୁ କୌଣସି ଯୁକ୍ତି ଉପଯୁକ୍ତ ବୋଧ ହୁଏ ନାହିଁ । ତେଲଙ୍ଗୀୟ କର୍ମଚାରୀମାନେ ଏଜେନ୍ସି ଚାକିରିରୁ ବଞ୍ଚିତ ହେବେ, ଏହାହିଁ ମୌଳିକ ଆଶଙ୍କା ହୋଇ ପାରେ, ମାତ୍ର ତାହା ନୁହେଁ, ବର୍ତ୍ତମାନ ଓଡ଼ିଆମାନେ ନିଜ ରାଜ୍ୟରେ ନିଜେ ବଞ୍ଚିତ ହୋଇ ରହିଅଛନ୍ତି । ତାହାର ତ ପୁଣି ସୁବିଚାର ଆବଶ୍ୟକ । ୧୯୨୧ ସାଲଠାରୁ ମାଳ ଅଞ୍ଚଳର କଚେରୀ ଭାଷା ଓଡ଼ିଆ ହେବ ବୋଲି ସରକାର ଇସ୍ତାହାର ପ୍ରକାଶ କରିଥିଲେ, ମାତ୍ର ଅଦ୍ୟାବଧି ତାହା କାର୍ଯ୍ୟରେ ପରିଣତ ହୋଇ ନାହିଁ, ତାହା ତେଲୁଗୁ ପ୍ରଭାବର ଫଳ ନୁହେଁ କି ? ଏହି ସୁଦୀର୍ଘ ତେରବର୍ଷ ମଧ୍ୟରେ କେତେଜଣ ଓଡ଼ିଆ ଏଜେନ୍ସି ଚାକିରି ପାଇଅଛନ୍ତି ? ଅଧିକସଂଖ୍ୟାରେ ଓଡ଼ିଆ କର୍ମଚାରୀ ନିଯୁକ୍ତ ନ ହେଲେ ମାଳ ଅଞ୍ଚଳର କଚେରୀ ଭାଷା ଓଡ଼ିଆ ହେବ କିପରି ? ଅନ୍ୟ ଜାତିର ସ୍ୱାର୍ଥରକ୍ଷା ପାଇଁ ଗୋଟାଏ ଜାତିକୁ ତାହାର ସ୍ୱାର୍ଥ ଏବଂ ସ୍ୱତ୍ୱରୁ ବଞ୍ଚିତ କରିବା କଦାପି ଉଚିତ ନୁହେଁ । ଏଥିର ଫଳ ଏହାହିଁ ହେଉଅଛି ଯେ, ଜଣେ ଖାଉଛି, ଅଉ ଯାହାର ଭାତହାଣ୍ଡି ସେ ଉପାସରେ ଶୁଖୁଛି । ଏଥିପାଇଁ ସମଗ୍ର ଓଡ଼ିଆ ଜାତି ଦେଶମିଶ୍ରଣ ସକାଶେ ଉଦ୍‌ବିଗ୍ନ । ଓଡ଼ିଆମାନଙ୍କର ଦୁରବସ୍ଥା ପୁଙ୍ଖାନୁପୁଙ୍ଖ ରୂପେ ଆଲୋଚନା କରି ଭାରତ ସରକାର ପ୍ରେରିତ ଓଡ଼ନେଲ କମିଟି ଯଥାର୍ଥ କହିଛନ୍ତି — "ତେଲୁଗୁମାନଙ୍କର ପ୍ରତିବାଦ ନ୍ୟାୟତଃ ଗ୍ରହଣଯୋଗ୍ୟ ନୁହେ ।" ବାସ୍ତବରେ ସେମାନଙ୍କର ପ୍ରତିବାଦ ନିତାନ୍ତ ନିନ୍ଦ୍ୟ । ଏହା ସତ୍ୟର ଭୂମିରେ ସର୍ବାଂଶରେ ଠିଆ ହୋଇ ବଜ୍ର କଣ୍ଠରେ ଘୋଷଣା କରାଯାଇପାରେ । ଉତ୍କଳ ଦେଶମିଶ୍ରଣ ସମସ୍ୟାର ସମାଧାନ ପାଇଁ ଭାରତ ସରକାର ୧୯୨୪ ସାଲରେ "ଫିଲିପଡଫ" କମିଶନ ନିଯୁକ୍ତ କରିଥିଲେ । ଉକ୍ତ କମିଶନ ତାଙ୍କ ସୁଚିନ୍ତିତ

ରିପୋର୍ଟରେ ଏହି ମର୍ମରେ ଲେଖିଛନ୍ତି ଯେ-"ଆମ୍ଭମାନଙ୍କ ଅନୁସନ୍ଧାନରେ ଏହା ପ୍ରଦର୍ଶିତ ହୋଇଅଛି ଯେ, ମାନ୍ଦ୍ରାଜର ଓଡ଼ିଆ ଭାଷୀ ଶିକ୍ଷିତ ଲୋକମାନେ ବହୁ-ଦିବସାବଧି ହୃଦୟରେ ଗୋଟିଏ ପ୍ରକୃତ ବାସନା ପୋଷଣ କରି ଆସୁଅଛନ୍ତି ଯେ – ମାନ୍ଦ୍ରାଜ ଅନ୍ତର୍ଗତ ଓଡ଼ିଆ ଭାଷୀ ଖଣ୍ଡମାନ ଓଡ଼ିଶା ସହିତ ମିଳିତ ହୋଇ ଏକ ଶାସନାଧୀନରେ ରହୁ । ଏହା ନିଃସନ୍ଦେହରେ ବୋଲଯାଇପାରେ ଯେ, ଏହି ଦେଶମିଶ୍ରଣ ସମ୍ବନ୍ଧରେ ଅଭିଜ୍ଞ ଓଡ଼ିଶାର ଉପ୍ଯୁକ୍ତମାନେ ଏ ବିଷୟର ପୃଷ୍ଠ-ପୋଷକ ।" ସରକାରଙ୍କର ନିଯୁକ୍ତ କମିଟିମାନ ଉତ୍କଳ ଦେଶମିଶ୍ରଣ ସମ୍ବନ୍ଧରେ ବାରମ୍ବାର ଏହିପରି ଅନୁକୂଳ ମତ ପ୍ରକାଶ କରିଥିବା ସ୍ଥଳେ ସେଥିର ସନ୍ତୋଷ-ଜନକ ମୀମାଂସା ଅଦ୍ୟାବଧି ହୋଇ ନ ଥିବା ଓଡ଼ିଶା ତଥା ସମଗ୍ର ଓଡ଼ିଆ ଜାତିର ଦୁର୍ଭାଗ୍ୟ ବୋଲିବାକୁ ହେବ । ଏହି କମିସନମାନେ ଦେଶମିଶ୍ରଣ ସମ୍ବନ୍ଧରେ ଭାଷା, ଜାତି, ଇତିହାସ, ଆର୍ଥିକ ଅବସ୍ଥା, ଉପକୂଳ ଓ ପାର୍ବତ୍ୟ ଅଞ୍ଚଳର ସମ୍ପର୍କ, ଆର୍ଥିକ ସମସ୍ୟା, ଯାତାୟାତରେ ସୁବିଧା ଏବଂ ଜନମତ ପ୍ରଭୃତି ବହୁ ବିଷୟ ପ୍ରତି ସତର୍କ ଦୃଷ୍ଟି ରଖି ଦେଶଗଠନ ଧାର୍ଯ୍ୟ କରିଅଛନ୍ତି । ସେହି ଦୃଷ୍ଟିରେ ଜୟପୁର ଓଡ଼ିଶା ସଙ୍ଗେ ମିଶିବା ଏକାନ୍ତ ବାଞ୍ଛନୀୟ । ଜୟପୁରର ପୂର୍ବ ରାଜା କେ·ସି·ଆଇ.ଇ· ବିକ୍ରମ ଦେବ ଏବଂ ତତ୍‌ପୂର୍ବ ରାମଚନ୍ଦ୍ର ଦେବ ତୈଲଙ୍ଗୀୟ ପ୍ରବେଚନାରେ ପ୍ରଭାବିତ ହୋଇ ଦେଶମିଶ୍ରଣରେ ସପକ୍ଷତା ପ୍ରଦର୍ଶନ କରି ନ ଥିଲେ; ମାତ୍ର ବର୍ତ୍ତମାନ ଜାତିପ୍ରେମୀ ମହାରାଜ ଶ୍ରୀଯୁକ୍ତ ବିକ୍ରମ ଦେବ ବର୍ମା ଦେଶମିଶ୍ରଣର ପୂର୍ଣ୍ଣ ପକ୍ଷପାତୀ ଏବଂ କର୍ଣ୍ଣଧାର । ଦେଶମିଶ୍ରଣ ଆନ୍ଦୋଳନ ରୂପ ମାତୃପୂଜାଯଜ୍ଞରେ ସେ ପଞ୍ଚପୁରୋଧା ରୂପରେ କାର୍ଯ୍ୟ ମଧ୍ୟ କରି ଅଛନ୍ତି । ସେ ବିଷୟରେ ତାଙ୍କର ଅକଳଙ୍କ ସଦାବେଦୀ ଉଲ୍ଲେଖଯୋଗ୍ୟ । ଜୟ-ପୁର ଓଡ଼ିଶାର ଜାତୀୟ ଜୀବନର ପୁଣ୍ୟପୀଠ । ଜୟପୁର ଓଡ଼ିଶାର ମହତ୍ତ୍ୱ, ଉତ୍କଳର ପ୍ରଚ୍ଛନ୍ନ ସମ୍ପଦ ଜୟପୁରରେ, ଉତ୍କଳ ପ୍ରକୃତିର ବିରାଟ ଶକ୍ତି ଡୁଡୁମା ଜଳପ୍ରପାତ ଜୟପୁର ରେ, ଉତ୍କଳର ନବବଳ ଉତ୍କଳତ୍ୱ ସେହି ଜୟପୁରରେ । ଜୟପୁର ଉତ୍କଳର ଅର୍ଦ୍ଧାଙ୍ଗ; ସୁତରାଂ ଜୟପୁର ବିହୀନ ଉତ୍କଳ ସର୍ବଥା ଅସମ୍ପୂର୍ଣ୍ଣ, ଅଶକ୍ତ ଏବଂ ଦୁର୍ବଳ—ଏହା ସତ୍ୟ ଅତି ସତ୍ୟ, ଏବଂ ମହାସତ୍ୟ । ସୁତରାଂ ଜୟପୁରର ମଙ୍ଗଳମିଶ୍ରଣକୁ ପ୍ରତ୍ୟେକ ଉତ୍କଳବାସୀ ଅଧୀର ଚାତକ ନେତ୍ରରେ ଚାହିଁ ରହିଅଛନ୍ତି ।

ସରକାର ଏବଂ ସରକାରଙ୍କ ନିଯୁକ୍ତ କର୍ମଚାରୀମାନେ ଜୟପୁରକୁ ଓଡ଼ିଶା ସଙ୍ଗେ ମିଶାଇବା ସକାଶେ ଥରକୁ ଥର ସୁପାରିଶ କରି ଆସୁଅଛନ୍ତି; ମାତ୍ର ଦୁର୍ଭାଗ୍ୟର ବିଷୟ, ତଥାପି ଶ୍ୱେତ ପତ୍ରରେ ଜୟପୁରକୁ ନୂତନ ଉତ୍କଳ ପ୍ରଦେଶର ଅନ୍ତର୍ଭୁକ୍ତ କରି ଯାଇନାହିଁ । ସେଥିପାଇଁ ଜୟପୁର ଏବଂ ଓଡ଼ିଶାରେ ବିଶେଷ ଚାଞ୍ଚଲ୍ୟର ସୃଷ୍ଟି ହୋଇ ଅଛି । ଜୟପୁରବାସୀଙ୍କ ହୃଦୟରେ ଶ୍ୱେତପତ୍ର ଗଭୀର ବ୍ୟଥା ଏବଂ ଅସନ୍ତୋଷ ଜାତ କରିଅଛି । ତଥାପି ସେମାନେ ହତାଶ ହୋଇ ନାହାନ୍ତି । ସେମାନେ ଦୁଇଥର ଜୟପୁର ଏବଂ ନିଖିଳ ଉତ୍କଳ ସମ୍ମିଳନୀର ଅଧିବେଶନ ଦ୍ୱାରା ଜାତୀୟ ଆନ୍ଦୋଳନକୁ ସଜୀବ କରି ବହୁଦୂର ଅଗ୍ରସର କରାଇଅଛନ୍ତି । ଏବର କୌଣସିରେ ପୃଥକତା ନାହିଁ । ସେ ବାଟ ଖୋଲିଲେ ଉତ୍କଳ ବିଶେଷଭାବେ ଅଗ୍ରସର ହୁଏ । ସେଠାର ଜାତୀୟ କର୍ମକର୍ତ୍ତାମାନେ ସେବାର ଜ୍ୱଳନ୍ତ ପ୍ରମାଣ ଦେଖାଇ ଅଛନ୍ତି । ଏହି ସମ୍ମିଳନୀ ସେ ଅଞ୍ଚଳର ଉତ୍ସାହ ଏବଂ ଜାତୀୟ ଜାଗରଣକୁ ବହୁ ଗୁଣିତ କରିଦେଇ ଅଛି । ସମ୍ମିଳନୀ ପ୍ରତି ଜୟପୁରର ବର୍ତ୍ତମାନ ମହାରାଜ ବିକ୍ରମ ଦେବ ବର୍ମଙ୍କର ସମ୍ପୂର୍ଣ୍ଣ ସହାନୁଭୂତି ଅଛି । ତାଙ୍କ ରାଜ୍ୟ ଓଡ଼ିଶାରେ ମିଶାଇବା ପାଇଁ ସେ ଆତୁର । ମହାରାଜ ମାନ୍ୟତା ବିଦ୍ୟାଧର ସିଂହ ଦେବ ସମ୍ମିଳନୀର ଜଣେ ପ୍ରଧାନ କର୍ମୀ । ଗତ ମେ ମାସରେ ଏହି ସମ୍ମିଳନୀର ଦ୍ୱିତୀୟ ଅଧିବେଶନ ବିଶେଷ ଆଡ଼ମ୍ବରରେ ହୋଇଥିଲା । ଉତ୍କଳର ସମଗ୍ର ଅଞ୍ଚଳର ବିଶିଷ୍ଟ ଜାତୀୟ ପ୍ରତିନିଧିମାନେ ଏହି ଅଧିବେଶନରେ ଯୋଗ ଦେଇଥିଲେ । ଜାତୀୟ ପ୍ରେରଣା ବହୁମୂର୍ତ୍ତିରେ ଖେଳି ବୁଲୁଥିଲା । ଏହି ସମ୍ମିଳନୀ ଜୟପୁର ଦେହରେ ଗୋଟାଏ ବୈପ୍ଳବିକ ଜାତୀୟ ଜୀବନ ଆଣି ପ୍ରବେଶ କରାଇ ଦେଇଅଛି । ଶ୍ୱେତପତ୍ର ଜୟପୁର ପ୍ରାଣରେ ଯେଉଁ କୃଷ୍ଣରେଖାର ଛାୟାପାତ କରିଥିଲା, ଏହି ସମ୍ମିଳନୀର ଜ୍ୟୋତିରେ ତାହା ମିଳେଇ ଯାଇଅଛି । ଜାତୀୟ ଶକ୍ତିର ପ୍ରଖରତା ବନ୍ୟା ସ୍ରୋତ ପରି ଉଚ୍ଛ୍ୱଳ ହୋଇ ଉଠିଅଛି । ଏହି ସମ୍ମିଳନୀ ଜୟପୁରବାସୀ ଶିକ୍ଷିତ ଦେଶପ୍ରାଣ ଓଡ଼ିଆମାନଙ୍କର ମୁକ୍ତି ଚିନ୍ତାର ନିଷ୍ଠା ଦୃଢ଼ତା । ଶୈଶବରେ ସେ ଯେଉଁ ପ୍ରଭାବ ଦେଖାଇଅଛି, ସେଥିରୁ ବିଶ୍ୱାସ ହୁଏ, ତାହାର ଭବିଷ୍ୟତ ଅତି ଉଜ୍ଜ୍ୱଳ । ଏ ସମ୍ମିଳନୀ ପାଇଁ ଜୟପୁର ବହୁ ଅର୍ଥବ୍ୟୟ କରିଅଛି । ସମ୍ମିଳନୀ ପ୍ରତି ଜୟପୁରବାସୀଙ୍କର ଆଗ୍ରହ ବଚନାତୀତ । ହଜାର ହଜାର ଜୟପୁରବାସୀ ସମ୍ମିଳନୀରେ ଯୋଗଦେଇ ପ୍ରାଣର ଆକାଙ୍କ୍ଷା ବ୍ୟକ୍ତ କରିଥିଲେ । ସମ୍ମିଳନୀରେ ଜୟପୁରକୁ ଉତ୍କଳରେ ମିଶାଇବାର ଯୁକ୍ତି ଦୃଢ଼ ରୂପରେ ପ୍ରଦର୍ଶିତ ହୋଇ ପ୍ରସ୍ତାବମାନ ଧାର୍ଯ୍ୟ ହୋଇଥିଲା । ବକ୍ତାମାନେ

ବହୁବିଧ ଯୁକ୍ତି, ପ୍ରମାଣ ଦେଖାଇ ଜୟପୁରକୁ ଓଡ଼ିଶା ସଙ୍ଗରେ ମିଶାଇବା ପାଇଁ ପ୍ରବଳ ଦାବୀ କରିଥିଲେ । ବହୁ ଲକ୍ଷ ଓଡ଼ିଆଙ୍କର ଜାତୀୟତାକୁ ଧ୍ୱଂସ-ମୁଖରୁ ରକ୍ଷା କରି ଜୟପୁରକୁ ଓଡ଼ିଶାର ସୀମାଭୁକ୍ତ କରିବା ସକାଶେ ବିଳାତସ୍ଥ ମହାମାନ୍ୟ ଭାରତସଚିବ ଏବଂ ବଡ଼ଲାଟଙ୍କ ସମୀପକୁ ସମ୍ମିଳନୀ ପକ୍ଷରୁ ସର୍ବ-ସମ୍ମତିକ୍ରମେ ଆବେଦନ ପଠାଯାଇଅଛି । ନୂତନ ଉତ୍କଳ ପ୍ରଦେଶର ସୀମା ସମ୍ବନ୍ଧରେ ସରକାରଙ୍କର ଶେଷ ନିଷ୍ପତ୍ତି ଶୀଘ୍ର ପ୍ରକାଶିତ ହେବ । ଜୟପୁର ତଥା ଓଡ଼ିଶାବାସୀମାନେ ସେହି ନିଷ୍ପତ୍ତିକୁ ଆଶାପୂର୍ଣ୍ଣ ନେତ୍ରରେ ଚାହିଁ ରହିଅଛନ୍ତି । ନ୍ୟାୟପରାୟଣ ଇଂରେଜ ଗଭର୍ଣ୍ଣମେଣ୍ଟ ସେମାନଙ୍କର ଉଦ୍ଦେଶ୍ୟ ସଫଳ କରିବେ, ଏ ଭରସା ଏବଂ ବିଶ୍ୱାସ ମଧ୍ୟ ସମସ୍ତଙ୍କର ଅଛି । ଯାହାଙ୍କର ପତିତ ଉଦ୍ଧାରଣ ବାନା ଅର୍ଦ୍ଧ ଜଗତରେ ସଦମ୍ଭରେ ଉଡ଼ୁଅଛି, ସ୍ୱାଧୀନତା ଦାନ ଯାହାଙ୍କର ସହଜାତ ଧର୍ମ, ପତିତ ଓଡ଼ିଆ ଜାତି ତାଙ୍କର ଶରଣାପନ୍ନ । ପ୍ରାୟ ଦୁଇ କୋଟି ଓଡ଼ିଆଙ୍କ ପ୍ରାଣର ଆକୁଳ କ୍ରନ୍ଦନ ତାଙ୍କ ଉଦାର ସମଦର୍ଶୀ ହୃଦୟକୁ ଅବଶ୍ୟ ସ୍ପର୍ଶକରିବ, ଏହା ନିଃସଂଶୟରେ ବୋଲଯାଇ ପାରେ । ଖଣ୍ଡ ବିଖଣ୍ଡିତ ଓଡ଼ିଶା ପ୍ରଦେଶର ଏକତ୍ରୀକରଣ ଓଡ଼ିଆ ଜାତିର ନ୍ୟାଯ୍ୟ ପ୍ରାର୍ଥନା । ସମୟରେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଓଡ଼ିଶା ପ୍ରଦେଶ ବିସ୍ତୃତ ହୋଇଥିଲା । ଓଡ଼ିଆମାନେ ବର୍ତ୍ତମାନ ତାହା ଦାବୀ କରୁନାହାନ୍ତି କିମ୍ବା ଅନ୍ୟ ପ୍ରଦେଶରୁ ଖଣ୍ଡେ ଟାଣିଆଣି ତାହା ଗର୍ଭସାତ୍ କରି ନିଜ ପ୍ରଦେଶ ମୋଟ କରିବାକୁ ଇଚ୍ଛା କରୁନାହାନ୍ତି । ଧର୍ମତଃ, ନ୍ୟାୟତଃ ଯାହା ତାଙ୍କର ପ୍ରାପ୍ୟ, ସେହି ବିଚ୍ଛିନ୍ନ ଓଡ଼ିଆଭାଷୀ ଅଞ୍ଚଳ-ମାନ ଦାବୀ କରୁଅଛନ୍ତି । ଏରୂପ ଦାବିରେ ପ୍ରତ୍ୟେକ ଜାତିର ଜନ୍ମଗତ ଅଧିକାର ଅଛି । ଜୟପୁର ଓଡ଼ିଶାର ମିଳନ, ପ୍ରାଣସଙ୍ଗେ ଚେତନାର ମିଳନ । ଜୟ-ପୁରକୁ ଛାଡ଼ିଦେଲେ ଓଡ଼ିଆ ଜାତି ଗୋଟାଏ ନିସ୍ତେଜ, ଅସାର ପ୍ରଦେଶ ନେଇ କଅଣ କରିବ ? ଏହି ସବୁ ଆଡ଼କୁ ଦୃଷ୍ଟି ଦେଇ ଦୟାମୟ ଇଂରେଜ ସରକାର ନିଷ୍ପତ୍ତି ସୁବିଚାର କରିବେ, ଏ ଧାରଣା ସମୀଚୀନ । ଜୟପୁର ପ୍ରଭୃତି ବିଭିନ୍ନ ଓଡ଼ିଆ ଅଞ୍ଚଳକୁ ମିଶାଇଦେଇ ସରକାର ଏକ ଶାସନାଧୀନରେ ରଖିଲେ ଦୁଇକୋଟି ଓଡ଼ିଆ ତାଙ୍କୁ ହୃଦୟର ଭକ୍ତ୍ୟର୍ଘ୍ୟ ପ୍ରଦାନ କରି ପ୍ରାଣର କୃତଜ୍ଞଭାଷାରେ ଉଚ୍ଚକଣ୍ଠରେ ତାଙ୍କର ଜୟ ଜୟକାର ଘୋଷଣା କରିବେ । କେବଳ ଏତିକି ନୁହେଁ, ଭାରତ ସଚିବ ମହାମତି ହୋର୍ ସାହେବ ଏବଂ ସୁନାମଧନ୍ୟ ବଡ଼ଲାଟ ଲର୍ଡ଼ ଉଇଲିଂଟନଙ୍କୁ ହୃଦୟର ରତ୍ନ ସିଂହାସନରେ

ବସାଇ ଦେବତାଙ୍କାନରେ ଷୋଡଶୋପଚାରରେ ପୂଜା କରିବେ । ଉତ୍କଳୀୟ ଭବିଷ୍ୟ ବଂଶଧରମାନେ ମଧ୍ୟ ପୁରୁଷାନୁକ୍ରମେ ଉକ୍ତ ମହାତ୍ମାଦ୍ୱୟଙ୍କ ଉଦ୍ଦେଶ୍ୟରେ ସର୍ବଦା ପୁଷ୍ପାଞ୍ଜଳି ପ୍ରଦାନ କରୁଥିବେ । ଓଡ଼ିଶାର ସୌଭାଗ୍ୟବିଧାତା ବୋଲି ତାଙ୍କର ପବିତ୍ର ଅମର କୀର୍ତ୍ତି ସର୍ବତ୍ର ଘୋଷିତ ହେଉଥିବ । ଓଡ଼ିଆ ଜାତିର ଅସ୍ତିତ୍ୱ ଥିବାଯାଏ ଏହି ମହାନ କୀର୍ତ୍ତି ତାଙ୍କୁ ଯୁଗେ ଯୁଗେ ଅମର କରି ରଖିବ । କୀର୍ତ୍ତି-ର୍ଯସ୍ୟ ସ ଜୀବତି ।"

ଉତ୍‌ଥାନ, ପତନ ନିୟତିର ଅଖଣ୍ଡ ନିୟମ । ଉତ୍‌ଥାନ ପରେ ପତନ, ଏବଂ ପତନ ପରେ ଉତ୍‌ଥାନ ଏ ଦୁହେଁ ଚକ୍ରନେମୀ ପରି ପର୍ଯ୍ୟାୟକ୍ରମେ ଘଟୁ-ଅଛନ୍ତି । ସମସ୍ତଙ୍କ ଭାଗ୍ୟରେ ଉତ୍‌ଥାନ ପତନ ସ୍ୱାଭାବିକ । ଏହି ଦେବ ଭୂମି ଉତ୍କଳ ଭାଗ୍ୟରେ କେତେଥର ଉତ୍‌ଥାନ ପତନ ଘଟିଥିବ ଏବଂ ଭବିଷ୍ୟତରେ ଘଟିବ, ତାହା ଏକା ଅମର ଐତିହାସିକ ମହାକାଳର ଗୋଚରୀଭୂତ । ଯେଉଁ କାଳ ଉତ୍କଳଭାଗ୍ୟରେ ପତନ ଘଟାଇ ଅଛି, ସେହି ପୁଣି ଉତ୍‌ଥାନ ଆଣି ଦେବ । ଉତ୍କଳର ଭରସା ଜଗତ୍‌କର୍ତ୍ତା ପ୍ରଭୁ ଜଗନ୍ନାଥଙ୍କ କରୁଣାରେ ଉତ୍କଳ ମହିମିତ । ସେ ସ୍ୱୟଂ ବିଜେହୋଇ ସୁଦୂର କର୍ଣ୍ଣାଟ ମଣ୍ଡଳର କାଞ୍ଚି ସମରରେ ତାଙ୍କର ପ୍ରିୟଧାମ ଉତ୍କଳର ମାନ ରକ୍ଷା କରି ଅଛନ୍ତି । ସେହି ଅନନ୍ତ ମହିମା-ଧର କାଳିଆ ଧାଆନ୍ତି ତାଙ୍କ ଆଦରିଣୀ କନ୍ୟା ଉତ୍କଳ ଧରଣୀର ପୂର୍ବ ଗୌରବ ଫେରାଇ ଆଣନ୍ତୁ, ଜୟପୁର ଉତ୍କଳ ପ୍ରଦେଶରେ ମିଶି ମହାନନ୍ଦରେ ସାଫଲ୍ୟର ହାସ ବିସ୍ତାର କରୁ — ଏହାହିଁ ତାଙ୍କ ମଙ୍ଗଳପ୍ରଦ ପାଦପଦ୍ମରେ ନତମସ୍ତକରେ ଏକାନ୍ତ ବିନୀତ ଅଳି । ଜୟପୁର ଉତ୍କଳ ମିଳନର ଚିରସ୍ମରଣୀୟ ଶୁଭ ଦିବସ ପର୍ବ ଦିବସ ପରି ଉଲ୍ଲାସ ବର୍ଦ୍ଧନ କରି ଶୀଘ୍ର ଉପସ୍ଥିତ ହେଉ, ଜୟପୁରର ଅଧିଷ୍ଠାତ୍ରୀ ଦେବୀ ମା କନକଦୁର୍ଗାଙ୍କ ନିକଟରେ ଏହି ଭିକ୍ଷା ମାଗି ଲେଖାର ଉପସଂହାର କରିଗଲି । ଜୟ ଜଗଦମ୍ବେ ଦୁର୍ଗେ, ଶୁଭସ୍ୟ ଶୀଘ୍ରମ୍ । ସ୍ୱସ୍ତି, ସ୍ୱସ୍ତି, ସ୍ୱସ୍ତି ।

ଅତ୍ୟନ୍ତ ଆନନ୍ଦର ବିଷୟ — ଏ ପୁସ୍ତକର ଲେଖା ସମାପ୍ତ ହେଲା ପରେ ୧୯୩୪ ଖ୍ରୀଷ୍ଟାବ୍ଦ ନଭେମ୍ବର ମାସ ୨୨ ତାରିଖ ଦିନ ଜଏଣ୍ଟ ପାର୍ଲ୍ୟାମେଣ୍ଟାରୀ କମିଟିର ରିପୋର୍ଟ ପ୍ରକାଶିତ ହେଲା । ସେହି ଦିନଟି ଉତ୍କଳ ଭାଗ୍ୟରେ ଗୋଟିଏ ସ୍ମରଣୀୟ ମହା ଶୁଭ ଦିବସ । ଏଣିକି ସେ ପ୍ରତିବର୍ଷ ସର୍ବଶ୍ରେଷ୍ଠ ପର୍ବ ଦିବସ ରୂପେ ମହୋଲ୍ଲାସରେ ପୂଜିତ ହେବ । ଜୟପୁର ଉତ୍କଳରେ ମିଶିଲା,

ଏହି ଶୁଭ ସମ୍ବାଦ ଉକ୍ତ ରିପୋର୍ଟରେ ପ୍ରକାଶିତ ହୋଇଅଛି । ବିଚ୍ଛିନ୍ନ ଉତ୍କଳର କାତର କ୍ରନ୍ଦନରେ ଉତ୍କଳର ଭରସା ଜଗନ୍ନାଥ ମହାପ୍ରଭୁଙ୍କର କୃପା ସିଂହାସନ ବହୁକାଳ ପରେ ଟଳିଲା, ସେ ତାହାର ଦୁଃଖ କଥା ପାଇ ଆଶ୍ୱସ୍ତ ହେଲା । ତାହାର ଶୋକାଶ୍ରୁ ଆନନ୍ଦାଶ୍ରୁରେ ପରିଣତ ହେଲା । ଏହି ଶୁଭ ସମ୍ବାଦ ଉତ୍କଳର ହତାଶ ପ୍ରାଣରେ ଅମୃତଧାରା ଢାଳିଦେଲା । ସେ ଜୟପୁରକୁ ପାଇ ଜୟଶବ୍ଦ ଉଚ୍ଚାରଣ କରି ନାଚିଉଠିଲେ । ଏହି ମଙ୍ଗଳ ମିଳନ ପିଣ୍ଡ ସଙ୍ଗରେ ପ୍ରାଣର ମିଳନ ତୁଲ୍ୟ ଅଥବା ଶକ୍ତି ସଙ୍ଗରେ ପୌରୁଷର ମିଳନ ତୁଲ୍ୟ ଦୁର୍ଲଭ ମହାମିଳନ । ସାଧନାରେ ସାଫଲ୍ୟ ମିଳିଲେ ସେ ଆନନ୍ଦ ହୃଦୟରେ ଧରେ ନାହିଁ, ହୃଦୟ ପୂର୍ଣ୍ଣ ହୋଇ ଉଚ୍ଛୁଳିପଡ଼େ । ସେ ଆନନ୍ଦ କଳନା କରିବାକୁ ଯେ କୌଣସି ଭାଷା ସର୍ବଥା ଅକ୍ଷମ । ଏହି ଅପୂର୍ବ ମିଳନ ପ୍ରତ୍ୟେକ ଉତ୍କଳୀୟ ହୃଦୟରେ ଅମୃତ ମହୋତ୍ସବ ସୃଷ୍ଟି କରିଅଛି, ଏହା ବୋଲିବା ବାହୁଲ୍ୟ ମାତ୍ର । ମଣିକାଞ୍ଚନର ମିଳନ ଜ୍ୟୋତ୍ସ୍ନାମୃତର ମିଳନ ପ୍ରଭୃତି ବହୁ ଉତ୍କୃଷ୍ଟ ମିଳନର ପ୍ରୟୋଗ ପରମ୍ପରା ଚଳିଆସୁଅଛି; ମାତ୍ର ଏ ମିଳନ ତହୁଁ ବଳି ଶୌର୍ଯ୍ୟରେ ମହତ୍ତ୍ୱର ମିଳନ ପରି ଅତି ମଧୁର ଓ ଅତି ଉପାଦେୟ । ମହାରାଜ ଶ୍ରୀ ବିକ୍ରମ ଦେବ ବର୍ମା ମହୋଦୟ ବିଂଶବର୍ଷାଧିକ କାଳ ହେଲା ଏହି ମିଳନ ସକାଶେ ନାନା ପ୍ରକାର ଚେଷ୍ଟା କରିଆସୁଥିଲେ । ତାଙ୍କର ଅକ୍ଳାନ୍ତ ସାଧନା ସାଫଲ୍ୟର ମୂର୍ତ୍ତିଧାରଣ କଲା । ସେ ସିଂହାସନରେ ବସିଲେ, ଜୟପୁର ଓଡ଼ିଶାରେ ମିଶିଲା । ତାଙ୍କର ଏ ଅମର ସୁଖ୍ୟାତି ଉତ୍କଳ ଇତିହାସରେ ଉଜ୍ଜ୍ୱଳ ସ୍ୱର୍ଣ୍ଣାକ୍ଷରରେ ମୁଦ୍ରିତ ରହିବ । ତାଙ୍କୁ ରାଜା ରୂପରେ ପାଇବା ଜୟପୁର ପକ୍ଷରେ ବିଶେଷତଃ ଉତ୍କଳ ପକ୍ଷରେ ପରମ ସୌଭାଗ୍ୟର ବିଷୟ । ସାହିତ୍ୟ ସମ୍ରାଟ ରାଜର୍ଷିଙ୍କର ଦେଶମିଶ୍ରଣ ତପସ୍ୟା ସାର୍ଥକ ହୋଇଅଛି । ଏହି ଉପଲକ୍ଷରେ ଅନେକ ବିଶିଷ୍ଟ ବ୍ୟକ୍ତି ତାଙ୍କୁ ଯେଉଁ ପ୍ରୀତ୍ୟଭିନନ୍ଦନ ପ୍ରଦାନ କରିଥିଲେ, ସେ ଗୁଡ଼ିକର ପ୍ରତିଲିପି ନିମ୍ନରେ ପ୍ରଦତ୍ତ ହେଲା । ସେଥିରୁ ସେ ସମସ୍ତଙ୍କ ହୃଦୟରେ କି ଭଳି ଉଚ୍ଚାସନ ଲାଭ କରିଅଛନ୍ତି; ତାହା ସହଜରେ ଅନୁମେୟ ।

ପାଟଣା
ତା ୨୨ । ୧୧ । ୩୪

ଶ୍ରୀମନ୍ ମହାରାଜ,

ଜୟପୁର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ଅନ୍ତର୍ଭୁକ୍ତ ହୋଇଅଛି । ଜୟପୁର ଯେ ଓଡ଼ିଆ ରାଜ୍ୟ, ସେ କଥା ଆମ୍ଭମାନଙ୍କୁ ଭୁଲିବାକୁ ଚେଷ୍ଟା କରିବାକୁ ପଡୁଥିଲା । କିନ୍ତୁ ବର୍ତ୍ତମାନ ସତ୍ୟର ଜୟ ଘଟିଅଛି ।

ଭଗବାନ୍ ତୁମ୍ଭଙ୍କୁ ସ୍ୱାସ୍ଥ୍ୟ ସହିତ ଦୀର୍ଘଜୀବନ ଦିଅନ୍ତୁ । ତାହା ହେଲେ ତୁମ୍ଭ ଉତ୍କଳରାଜ୍ୟର ଭାଗ୍ୟ ନିଜ ହାତରେ ନେଇ କରିବାରେ କୃତକାର୍ଯ୍ୟ ହୋଇପାରିବେ ।

ମୁଁ କାର୍ଯ୍ୟ ଉପଲକ୍ଷରେ ଏଠାକୁ ଆସିଛି । ଶୀଘ୍ର ଏଠାରୁ ବାଣପୁର ଫେରିବ । ତୁମ୍ଭଙ୍କର କୁଶଳ ଆଶା କରେ ।

ତୁମ୍ଭଙ୍କର ସ୍ନେହାଧୀନ,
ଗୋଦାବରୀଶ ମିଶ୍ର



To
The
Maharaja of Jeypore (Vizag.)

Joint Committee report recommends inclusion of Jeypore, delighted, hearty congratulation.

Shreekrishna Mohapatra,
Great Indian Hotel,

To
The
Maharaja of Jeypore, (Vizag.)

Heartiest congratulations on Jeypore's inclusion in Orissa.

Nilakantha Das,

To

Raja Saheb, Jeypore.

Congratulations for Jeypore inclusion.

Madan Mohan Rath.

To

Raja Saheb, Jeypore (Vizag.)

Hearty congratulations

Anantaram Rath.

To

Maharaja Saheb, Jeypore (Vizag)

Happy Jeypore Parlakemundi included Orissa Province.

Dinabandhu Panda.

To

Maharaja Saheeb, Jeypore (Vizag)

Hearty congratulation for inclusion Jeypore, Orissa.

New Orissa.

To

Maharaja Saheb Jeypore (Vizag)

Heart leaps with joy at announcement,

Editor, Jubaka fund Oriya.

To

Kumar Bidyadhar Singh, Jeypore, Vizag.

please eccept congratulation, your afforts crowned success

Pyari Mohan Panigrahi

To

Maharaja Jeypore, Vizag.

Hearty congratulations, Pray co-operation guide

Madhusudan Panigrahi.

To

Raja Saheb Jeypore, Vizag.

Jeypore inclusion news in Orissa received with joy

Raja of Dharakote.

To

Maharaja,Jeypor, Vizag.

Welcome, Joypore, Orissa Province,

Balakrishna Rath.

To

Raja Saheb Jeypore, Vizag.

Thank God Utkal gets her Vikramarka restored to her.

Praharaja.

To

Maharaja. Jeypore

Orissa rejoices to secure jeypore in new province.

Jeypore will be brightest jewal of Orissa province. Felicitations.

B. Das

To

Maharala, Jeypore

Tikkali Oriyas heartily congratulate Jeypore inclusion.

Tikkali Oriyas

To

Raja Saheb, Jeypore ( Vizag. )

Utkal Sahitya Samaj hails your entry Orissa.

Secretary,
Utkal Sahitya Samaj

To

His Highness the Maharaja of Jeypore.
May it please your Highness,
Please accept our heartfelt thanks for kind help rendered in Orissa amalgamation.

We beg to remain,
May it please your highness
Your Highness's most obedient
Servants,
Inhabitants of
Gosaninowgam
25-11-34



କଟକ
୨୪।୧୧।୩୪

ପ୍ରିୟ ଶ୍ରୀ ମହାରାଜ,

ଆପଣଙ୍କ ସ୍ନେହମୟ ପତ୍ର ପାଇଅଛୁ । ଜୟପୁରକୁ ଓ ତହିଁ ସଙ୍ଗେ ଆମ ବିକ୍ରମ ଦେବଙ୍କୁ ପାଇଲୁଁ, ଏହି ସମ୍ବାଦରେ ପ୍ରତ୍ୟେକ ଓଡ଼ିଆ ପୁଅର ମନ କୁଣ୍ଢେ ମୋଟ ହୋଇଯାଇଅଛି । ବର୍ଷକ ପୂର୍ବେ ଗୋଟାଏ ଉଡ଼ା ଖବର ଶୁଣି ମୁଁ ଜୟପୁର ଓଡ଼ିଶାରେ ମିଶିବା ଯୋଗୁଁ ଆନନ୍ଦ ପ୍ରକାଶ କରି ଆପଣଙ୍କଠାକୁ ଟେଲିଗ୍ରାମ କରିଦେଲି । ପରେ ଏ ଖବର ମୂଳରେ କୌଣସି ସରକାରି ନିଦର୍ଶନ ନ ଥିବାର ଜାଣି ବ୍ୟଥିତ ହୋଇଥିଲି, ପ୍ରଭୁଙ୍କ କୃପାରୁ ମୋର ବର୍ଷକ ପୂର୍ବର ସେହି ଟେଲିଗ୍ରାମର ଶୁଭବାଚନ ଆଜି ସଫଳ ହେଲା । ଈଶ୍ୱର କୋଟିଏ ଓଡ଼ିଆଙ୍କ ଗୁହାରି ଶୁଣିଲେ ଓ ଜୟପୁରବାସୀ ଦଶଲକ୍ଷ ଓଡ଼ିଆଙ୍କ ପ୍ରାଣ ରଖିଲେ । ଶ୍ରୀ ବିକ୍ରମ ଦେବ ଜୟପୁର ଗାଦିରେ ବସି ନଥିଲେ ଜୟପୁର ଓଡ଼ିଶାରେ ମିଶିବା କଥା କେବଳ କେଥାରେହିଁ ପର୍ଯ୍ୟବସିତ ହୋଇ ଥାଆନ୍ତା ।

ଆଜି ଓଡ଼ିଶା ପ୍ରଦେଶର ରାଜା ମହାରାଜାଙ୍କ ମଉଡ଼ମଣି ରୂପେ ଉତ୍କଳର ବିକ୍ରମାଦିତ୍ୟ ଶ୍ରୀ ବିକ୍ରମ ଦେବ ବିରାଜିବେ । ବହୁତରୁ ପାରଳା ରାଜାସାହେବ ତୁମ୍ଭଙ୍କଠାକୁ ଯେଉଁ ଆଶ୍ୱାସନା ବାଣୀ ଲେଖିଥିଲେ, ତାହା ହିଁ ସଫଳ ହେଲା ।

ତୁମ୍ଭଙ୍କର ସ୍ନେହବଦ୍ଧ,
ଗୋପାଳଚନ୍ଦ୍ର ପ୍ରହରାଜ

ଖରସୁଆଁ, ସିଂହଭୂମ
୨୦।୧୧।୧୯୩୪

ଓଁ ତତ୍ସତ୍

ସ୍ୱସ୍ତି ଶ୍ରୀ ବଳପ୍ରତାପୋଦ୍ଦୀପିତପ୍ରତାପଦାନ, ଧର୍ମନନ୍ଦ ଶ୍ରୀମାନ୍ ମହାରାଜାଧିରାଜ ଉତ୍କଳ କାର୍ଣ୍ଣାଟ ଗୌଡ଼ ସମ୍ରାଟ୍ କଟକର ଶ୍ରୀମାନ୍ ଶ୍ରୀ ଶ୍ରୀ ଶ୍ରୀ ବିକ୍ରମ ଦେବ ବର୍ମା ମହାମ୍ଭସୁ ଜୟପୁରାଧୀଶ୍ୱରରେଷୁ—

ଶୁଭାଶିଷାଂମାଳା ବିଳସନ୍ତୁତମାମ୍

ଶ୍ରୀମନ୍ ମହାରାଜାଧିରାଜ,

ଶ୍ରୀ ଶ୍ରୀମନ୍ତଙ୍କ ଅକ୍ଳାନ୍ତ ଯତ୍ନ ବଦାନ୍ୟତା ଓ ଜ୍ଞାନକର୍ମୀଙ୍କ ରତାଦି ହେତୁ ଉତ୍କଳକୁ ଆଜି ସରକାରଙ୍କ ସିଲେକ୍ଟ କମିଟି ରିପୋର୍ଟ ଘୋଷଣାରୁ ଅନେକ ଅଂଶେ ଯୋଡ଼ାଯାଇଅଛି । ଉତ୍କଳର ବର୍ତ୍ତମାନ ଶେଷସୀମା ଜୟପୁର ରାଜ୍ୟର ଶ୍ରୀମନ୍ତ ଅଧୀଶ୍ୱର ଥିବାରୁ ସେ ଦକ୍ଷିଣ ସୀମା ଉତ୍କଳ ସହିତ ଯୋଡ଼ାଗଲା । ଏଥି ସକାଶେ ଶ୍ରୀମନ୍ତଙ୍କୁ ମୁଁ ଉତ୍କଳର ଉତ୍ତରାଂଶ ସିଂହଭୂମ ତରଫରୁ ହୃଦୟର ସହିତ ଅଭିନନ୍ଦିତ କରୁଅଛି ।

ଶ୍ରୀମନ୍ତ ଯେଉଁ ସିଂହଭୂମକୁ ହୃଦୟ ସହିତ ସ୍ନେହ ଓ ଦୟା ଦୃଷ୍ଟିରେ ଦେଖିଆସୁଅଛନ୍ତି ସେହି ସିଂହଭୂମର ଉଦ୍ଧାର ସାଧନ ଶ୍ରୀମନ୍ତଙ୍କ କରୁଣା ଦୃଷ୍ଟି ଉପରେ ନିର୍ଭର କରୁଅଛି ।

ସିଂହଭୂମ ଭାଷା ଇତିହାସ ବହି ୪ଖଣ୍ଡିଏ ଲେଖିଅଛି । ଉପାଧ୍ୟାୟମାନଙ୍କ କୁମାର ଶ୍ରୀମାନ୍ ବିଦ୍ୟାଧର ସିଂହ ଦେବ B.L. ଏହାର ଭୂମିକା ଲେଖିଅଛନ୍ତି ବହିଖଣ୍ଡିକ ବର୍ତ୍ତମାନ ମୁଦ୍ରିତ ହେଉଅଛି । ମୁଦ୍ରଣ ଶେଷ ହେବା ମାତ୍ରକେ ଶ୍ରୀମନ୍ତଙ୍କ କରକମଳରେ ଅର୍ପଣ କରି ନିଜକୁ ମୁଁ ଧନ୍ୟ ମଣିବି ବୋଲି ଆଶା କରେ । ପ୍ରଭୁକୃପାରୁ ଏପରି ସୁ-ଅବସର ଆସି ଉପସ୍ଥିତ ହେଉ, ଯହିଁରେ ଶ୍ରୀମନ୍ତଙ୍କ ସୌମ୍ୟ ମୂର୍ତ୍ତି ଦର୍ଶନ କରି ସିଂହଭୂମ ନିଜକୁ ଧନ୍ୟ ମଣିବ ଓ ସିଂହଭୂମି ବୋଲି ଜଗତରେ ଗୌରବାନ୍ୱିତ ହେବ । ପ୍ରଭୁଙ୍କ ଅଶେଷ କୃପାରୁ ଶ୍ରୀମନ୍ତ ସ୍ୱାସ୍ଥ୍ୟ ସହିତ ଦୀର୍ଘଜୀବୀ ହୁଅନ୍ତୁ । ଇତି ।

ଶ୍ରୀମତଃ ଶୁଭକାଙ୍କ୍ଷୀ
ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ

—୦—

The Utkal Sahitya Samaj, Cuttack

P. O. Cuttack

24-11-1934

To

The Raja Saheb of Jeypore.

Sir,

Pray accept our hearty expressions at the news of Jeypore coming into the ken of new Orissa. Sir, your labours in the past and your constant and silent labours for the cause of Oriya amalgamation are too great for words Our breasts are rising with a warmth of joy and happiness ever-expanding with the thought that though your blessings and good will, the cause of Orissa and specially Oriya literature will thrive with ever increasing amplitude and move on right lines. Your presence will ever be felt as source of illumination to the Oriya race through literature which really gives tongue to the mute.

with sincerest love & gratitude,

Your sincerely,
Lakshmi Narayan Sahu,
Secretary.



ଆନନ୍ଦ ଉପରେ ପୁଣି ଆନନ୍ଦ — ପୁଷ୍ପ ଉପରେ ବାସନ୍ତୀ ପୌର୍ଣ୍ଣମାସୀ ଜ୍ୟୋତ୍ସ୍ନାର ହାସ୍ୟରେଖା ସଂଯୋଗ । ଗତ ଡିସେମ୍ବର ମାସ ୧୯ ତାରିଖରେ ବିଶାଖପଟ୍ଟଣଠାରେ ଅନ୍ଧ୍ର ବିଶ୍ୱବିଦ୍ୟାଳୟର ବାର୍ଷିକ ଅଧିବେଶନ ହୋଇଥିଲା । ମାନ୍ଦ୍ରାଜର ଲାଟସାହେବ ମହୋଦୟ ସଭାପତିର ଆସନ ଅଳଙ୍କୃତ କରିଥିଲେ । ବିଶ୍ୱବିଦ୍ୟାଳୟ ସଭା ସାହିତ୍ୟ ସମ୍ରାଟ ମହାରାଜ ବିକ୍ରମ ଦେବ ବର୍ମା ମହୋଦୟଙ୍କୁ "ଡକ୍ଟର ଅଫ୍ ଲିଟରେଚର" "Doctor of Literature" ଉପାଧିରେ ମଣ୍ଡିତ କରିଅଛନ୍ତି । ଏଥିପୂର୍ବେ ପ୍ରାକୃତିକ ଉତ୍କଳର କୌଣସି ରଜା, ମହାରଜା କୌଣସି ବିଶିଷ୍ଟ ଶିକ୍ଷାନୁଷ୍ଠାନ ପକ୍ଷରୁ ସାହିତ୍ୟ ସମ୍ବନ୍ଧୀୟ ଏ ଭଳି ଗୌରବେର ଉଚ୍ଚତମ ଉପାଧି ଲାଭ କରି ନ ଥିଲେ । ବର୍ମା ମହୋଦୟ ଉତ୍କଳର ରାଜା, ତାଙ୍କର ଏ ଉପାଧି ଓଡ଼ିଆ ଜାତିର ଦୁର୍ଲ୍ଲଭ ସମ୍ମାନ । ସେଥିପାଇଁ ପ୍ରତ୍ୟେକ ଓଡ଼ିଆ ଗୁଣ୍ଡି ଫୁଲାଇ ଗର୍ବ ଅନୁଭବ କରିବ । ବିଶ୍ୱ ପଣ୍ଡିତଗଣ ପ୍ରଦତ୍ତ ଉପାଧି ବିଶ୍ୱରେ ମହାମୂଲ୍ୟବାନ୍ । ପୁଣି ସାହିତ୍ୟ ସମ୍ରାଟଙ୍କ ସ୍ପର୍ଶରେ ସେହି ଉପାଧିର ମୂଲ୍ୟ ବହୁଗୁଣିତ ହୋଇଅଛି । ଜ୍ୟୋତ୍ସ୍ନା ସ୍ପର୍ଶରେ ଚନ୍ଦ୍ରକାନ୍ତ ମଣି ଅଧିକ ଜ୍ୟୋତିର୍ମୟ ହୁଏସିନା । ଏହି ଉପାଧି ଉପଲକ୍ଷେ ମହାରାଜ ମହୋଦୟଙ୍କ ଉତ୍କଳର ବିଭିନ୍ନ ଅଞ୍ଚଳରୁ ଅନେକ ବିଶିଷ୍ଟ ବ୍ୟକ୍ତି ଆନନ୍ଦାଭିନନ୍ଦନ ପ୍ରଦାନ କରିଥିଲେ । ପୁସ୍ତକର କଳେବର ବୃଦ୍ଧି ଆଶଙ୍କାରେ ତାହା ପ୍ରକାଶ କରିବାର ସୁବିଧା ହେଲ ନାହିଁ । ନବଲବ୍ଧ ସାରସ୍ୱତ ମହାମୁକୁଟ ସାହିତ୍ୟ ସମ୍ରାଟଙ୍କ ମସ୍ତକରେ ଶତବର୍ଷ ବିରାଜିତ ଥାଉ- ଏହାହିଁ ନବ ଉତ୍କଳର କାମନା ।



## ପରିଶିଷ୍ଟ – 'କ'

# କୋରାପୁଟର ମୁଖ୍ୟ ଐତିହାସିକ ଘଟଣାବଳୀ

(କୋରାପୁଟ ଅଞ୍ଚଳରେ କୌଣସିପ୍ରକାର ପ୍ରତ୍ନତାତ୍ତ୍ୱିକ ସର୍ଭେ କିମ୍ବା ବିଶେଷ ଐତିହାସିକ ଗବେଷଣା ଏବେ ସୁଦ୍ଧା ହୋଇନାହିଁ । ଏଣୁ ବହୁ ଐତିହାସିକ ତଥ୍ୟ ଲୋକଲୋଚନକୁ ଆସିପାରିନାହିଁ । ତଥାପି ଗେଜେଟିୟରମାନଙ୍କ ପ୍ରଦତ୍ତ ତଥ୍ୟକୁ ଭିତ୍ତିକରି ଏ ଘଟଣାବଳୀର ତାଲିକା ପ୍ରସ୍ତୁତ କରଯାଇଛି ।)

**ଖ୍ରୀଷ୍ଟପୂର୍ବ ୨୬୧** – କଳିଙ୍ଗ ବିଜୟ ପରେ ମଗଧ ସମ୍ରାଟ ଅଶୋକ କଳିଙ୍ଗର ଦକ୍ଷିଣ ପଶ୍ଚିମ ଦିଗରେ ଅବସ୍ଥିତ ଆଟବିକ ରାଜ୍ୟ (କଳିଙ୍ଗ ବନ ବା ମହାବନ ଯାହାକି ମୁଖ୍ୟତଃ କୋରାପୁଟ ଅଞ୍ଚଳ) କୁ ଅଧିକାର କରି ନପାରି "ଏ ଅଞ୍ଚଳ ଦୁର୍ଭେଦ୍ୟ" ବୋଲି ପ୍ରକାଶ କରିଥିଲେ ।

**ଖ୍ରୀ.ପୂ. ପ୍ରଥମ ଶତାବ୍ଦୀ**—ମହା ମେଘ ବାହନ ବଂଶର ନରପତି ଖାରବେଳଙ୍କ ନିଜ ସମର ବାହିନୀ ପାଇଁ ବିଦ୍ୟାଧର ଅଞ୍ଚଳ (ଆଟବିକ ଅଞ୍ଚଳକୁ ସେ ସମୟରେ ବିଦ୍ୟାଧର ଅଞ୍ଚଳ କୁହାଯାଉଥିଲା ଏବଂ ଏହା ମୁଖ୍ୟତଃ କୋରାପୁଟ ଅଞ୍ଚଳ)ରୁ ସୈନ୍ୟ ନିଯୁକ୍ତ ।

**୩୫୦ ଖ୍ରୀଷ୍ଟାବ୍ଦ** – ମହାକାନ୍ତାର (କୋରାପୁଟ ଅଞ୍ଚଳକୁ ସେ ସମୟରେ କୁହାଯାଉଥିଲା) ର ରାଜା ବ୍ୟାଘ୍ର ରାଜଙ୍କୁ ପରାସ୍ତ କରିଛନ୍ତି ବୋଲି ସମୁଦ୍ରଗୁପ୍ତଙ୍କ ଘୋଷଣା ।

**୪ର୍ଥ–୫ମ ଶତାବ୍ଦୀ** – ନଳବଂଶ ରାଜାଙ୍କ ପ୍ରାଧାନ୍ୟ ବୃଦ୍ଧି । [ନଳବଂଶ ରାଜାଙ୍କ ରାଜଧାନୀ କୋରାପୁଟ ଜିଲ୍ଲାର ଉମରକୋଟ ନିକଟସ୍ଥ ପୁଷ୍କରୀ (ପୋଡ଼ାଗଡ଼) ରେ ଅବସ୍ଥିତ ଥିଲା) । ଭକ୍ତିକ ରାଜବଂଶର ପ୍ରାଧାନ୍ୟ ହ୍ରାସ ।

**୪୯୮ ଖ୍ରୀଷ୍ଟାବ୍ଦ**—ମାଠର ରାଜବଂଶ ଅଧୀନରେ ଥିବା ଅଞ୍ଚଳ (କୋରାପୁଟର ଉତ୍ତର ପୂର୍ବାଞ୍ଚଳ-ଗୁଣୁପୁର ଅଞ୍ଚଳ) ଉପରେ ଗଙ୍ଗବଂଶ ନରପତିଙ୍କ ଅଧିକାର ।

**ନବମ ଶତାବ୍ଦୀର ମଧ୍ୟଭାଗ** – ସୋମବଂଶୀ ନରପତିଙ୍କ ସୋନପୁର ଅଞ୍ଚଳରେ ପ୍ରାଧାନ୍ୟ ବୃଦ୍ଧି ଏବଂ ତ୍ରିକଳିଙ୍ଗର କିଛି ଅଂଶ (କୋରାପୁଟ ଅଞ୍ଚଳର ଉତ୍ତର ପଶ୍ଚିମାଞ୍ଚଳ) ଅଧିକାର ।

**୧୦୨୩ ଖ୍ରୀଷ୍ଟାବ୍ଦ** – ଶୈଳରାଜାଙ୍କ ଅଳ୍ପ ସମୟ ପାଇଁ ଏ ଅଞ୍ଚଳ ଅଧିକାର ପରେ ଗଙ୍ଗବଂଶ ରାଜା ବଜ୍ରହସ୍ତ (୫ମ) ଙ୍କ ଦ୍ୱାରା ପରାସ୍ତ ।

**୧୧୧୮—୧୧୮୧ ଖ୍ରୀଷ୍ଟାବ୍ଦ**—କାଳଚୁରୀ ଓ ଗଙ୍ଗବଂଶାଧିପତିଙ୍କ ମଧ୍ୟରେ ସଂଘର୍ଷ । ଏ ସମୟରେ ନାଗବଂଶ ନରପତିଙ୍କ ଦ୍ୱାରା ଏ ଅଞ୍ଚଳ ଅଧିକୃତ ।

**୧୩ଶ ଶତାବ୍ଦୀର ମଧ୍ୟଭାଗ**—ଏ ଅଞ୍ଚଳର କିଛି ଅଂଶ ମତ୍ସ୍ୟବଂଶୀଙ୍କ ଅଧିକାର ଭୁକ୍ତ ହେଲା । ଏହା ଉକ୍ତ ବାଡ ବା ଜୟପୁର ଜମିଦାରିର କିଛି ଓ ମାଳଗୁଲ ଜମିଦାରୀକୁ ନେଇ ଗଠିତ ଅଞ୍ଚଳ ବୋଲି ବୁଝାଯାଏ ।

**୧୪ଶ ଶତାବ୍ଦୀ ମଧ୍ୟଭାଗ**—ଶିଳାବଂଶ ଦ୍ୱାରା ନନ୍ଦପୁର ରାଜ୍ୟ ଅଧିକାର ଏବଂ ତିନିପୁରୁଷର ଶାସନ । ଏହି ବଂଶର ଶେଷରଜା ପ୍ରତାପ ଗଙ୍ଗ ଦେବଙ୍କ ଅନ୍ତେ ସୂର୍ଯ୍ୟବଂଶୀ ବିନାୟକ ଦେବ ଉତ୍ତରାଧିକାରୀ ହେଲେ ।

ଖ୍ରୀଷ୍ଟାବ୍ଦ **୧୪୪୩**— ପ୍ରଥମ ସୂର୍ଯ୍ୟବଂଶୀ ରାଜା ବିନାୟକ ଦେବଙ୍କ ନନ୍ଦପୁର ସିଂହାସନ (ବତିଶ ସିଂହାସନ) ଆରୋହଣ ।

,, **୧୫୨୮**— ନନ୍ଦପୁର ରାଜ୍ୟର ରାଜଧାନୀ ରାୟଗଡାକୁ ସ୍ଥାନାନ୍ତରିତ ।

,, **୧୬୫୦**— ରାଜଧାନୀ ଜୟପୁରକୁ ସ୍ଥାନାନ୍ତରିତ ।

,, **୧୬୬୧**— ଗୋଲକୁଣ୍ଡା ସୁଲତାନଙ୍କର ଜଣେ ଫର୍ମାନ ଦ୍ୱାରା ଜୟପୁର ରାଜ୍ୟର ରାଜା ବୀର ବିକ୍ରମଙ୍କୁ 'ମହାରାଜ' ଉପାଧି ପ୍ରଦାନ ପୂର୍ବକ ଏକ ତାମ୍ର ଫଳକ ପ୍ରଦାନ ।

,, **୧୭୧୧**— ରାଜା ରାମଚନ୍ଦ୍ର ବଳରାମଙ୍କ ଦ୍ୱାରା ନାରାୟଣ ପାଟଣାକୁ ରାଜଧାନୀ ସ୍ଥାନାନ୍ତର ।

,, **୧୭୧୨**— କାଶିପୁର, ଚନ୍ଦ୍ରଗିରି, ଖିଷ୍ଣୁଗିରି ଓ ମହୁଲପାଟଣା ଅଞ୍ଚଳ କଳାହାଣ୍ଡିକୁ ହସ୍ତାନ୍ତର ।

,, **୧୭୫୫**— କ୍ୟାପଟେନ ମାଥ୍ୟୁସଙ୍କ ରାୟଗଡା ଓ ଜୟପୁର ଆକ୍ରମଣ ଓ ଘାଟି ସ୍ଥାନ ଅଧିକାର ।

,, **୧୭୫୮**— ରାଜଧାନୀ ପୁନର୍ବାର ଜୟପୁରକୁ ସ୍ଥାନାନ୍ତର ।

,, **୧୭୭୮**— ବସ୍ତର ରାଜ୍ୟର କୋଟପାଡ ପ୍ରଗଣା ଜୟପୁରର ଅନ୍ତର୍ଭୁକ୍ତ ହେଲା ।

ଖ୍ରୀଷ୍ଟାବ୍ଦ ୧୮୦୯ — ଜୟପୁର ଇଷ୍ଟେଟ ପାଇଁ ଜୟପୁର ଓ ପାର୍ବତୀପୁରରେ ଆସିଷ୍ଟାଣ୍ଟ ଏଜେଣ୍ଟ ନିଯୁକ୍ତ । ଶାସନର ସୁବିଧା ପାଇଁ ବ୍ରିଟିଶ ସରକାର ୧୮୬୪ ମେ ମାସରେ ଜୟପୁରକୁ ଏକ ସ୍ୱତନ୍ତ୍ର ପୋଲିସ ଜିଲ୍ଲା ଘୋଷଣା କରି ଜଣେ ଆସିଷ୍ଟାଣ୍ଟ ପୋଲିସ ସୁପରିନ୍‌ଟେଣ୍ଡେଣ୍ଟଙ୍କୁ ଜୟପୁରଠାରେ ଅବସ୍ଥାପିତ କଲେ ।

ଖ୍ରୀଷ୍ଟାବ୍ଦ ୧୮୬୪ — ଗୁଣୁପୁର ଅଞ୍ଚଳରେ ଶବର ମେଳି ।

ଖ୍ରୀଷ୍ଟାବ୍ଦ ୧୮୬୬ — ସାଲୁର-ଜୟପୁର ରାସ୍ତାର ନିର୍ମାଣ କାର୍ଯ୍ୟ ଆରମ୍ଭ ।

ଖ୍ରୀଷ୍ଟାବ୍ଦ ୧୮୭୦ — ବ୍ରିଟିଶମାନଙ୍କ ଦ୍ୱାରା କୋରାପୁଟକୁ ସଦର ମହକୁମା ପରିବର୍ତ୍ତନ । ଏଠାକୁ ଆସିଷ୍ଟାଣ୍ଟ ଏଜେଣ୍ଟ ଓ ପୋଲିସ୍ ସୁପରିନ୍‌ଟେଣ୍ଡେଣ୍ଟଙ୍କ କାର୍ଯ୍ୟାଳୟ ସ୍ଥାନାନ୍ତର

ଖ୍ରୀଷ୍ଟାବ୍ଦ ୧୮୭୬-୭୮ — ଦୁର୍ଭିକ୍ଷର କରାଳଗ୍ରାସ । ବହୁ ଧନଜୀବନ ହାନି ।

ଖ୍ରୀଷ୍ଟାବ୍ଦ ୧୮୭୯-୮୦ — ମାଲକାନଗିରି ଅଞ୍ଚଳରେ ତମା ବିଦ୍ରୋହ ।

ଖ୍ରୀଷ୍ଟାବ୍ଦ ୧୮୮୨ — କୋରାପୁଟରେ ଇଭେନ୍‌ଜେଲିକାଲ ଲୁଥରାନ ମିଶନର କାର୍ଯ୍ୟ ଆରମ୍ଭ ।

ଖ୍ରୀଷ୍ଟାବ୍ଦ ୧୮୯୬-୯୭ — କରାଳ ଦୁର୍ଭିକ୍ଷରେ ବହୁ ଜନଜୀବନ କ୍ଷୟ ।

ଖ୍ରୀଷ୍ଟାବ୍ଦ ୧୯୦୫ — କୋରାପୁଟ ସବ୍‌ଡିଭିଜନ୍‌ରେ ପ୍ରଥମ ଲୋକାଲ ବୋର୍ଡ଼ ଗଠନ ।

ଖ୍ରୀଷ୍ଟାବ୍ଦ ୧୯୧୦ — ବିଷମକଟକରେ ଦୁର୍ଭିକ୍ଷ ।

ଖ୍ରୀଷ୍ଟାବ୍ଦ ୧୯୧୩-୧୪ — ପ୍ରଳୟଙ୍କରୀ ବନ୍ୟା ।

ଖ୍ରୀଷ୍ଟାବ୍ଦ ୧୯୧୮ — ଇନ୍‌ଫ୍ଲୁଏଞ୍ଜା ମହାମାରୀର ବ୍ୟାପକ ପ୍ରସାରଣ ହେତୁ ବହୁ ଜୀବନ ହାନି ।

ଖ୍ରୀଷ୍ଟାବ୍ଦ ୧୯୨୦ — ଏଜେନ୍‌ସି ଡ଼ିଭିଜନ୍ ସୃଷ୍ଟି ।

ଖ୍ରୀଷ୍ଟାବ୍ଦ ୧୯୨୩ — ଏଜେନ୍‌ସି ଡ଼ିଭିଜନ୍‌ର ଅବସାନ ।

ଖ୍ରୀଷ୍ଟାବ୍ଦ ୧୯୩୧ — ଗୁଣୁପୁରକୁ ଗ୍ରେଟ ରେଲ ଲାଇନର ପ୍ରସାରଣ ।

ଖ୍ରୀଷ୍ଟାବ୍ଦ ୧୯୩୨ — ବିଜୟନଗରମ୍‌ରୁ ରାୟପୁରକୁ ରେଳପଥ ଉନ୍ମୋଚନ ।

ଖ୍ରୀଷ୍ଟାବ୍ଦ ୧୯୩୬ — ଏପ୍ରିଲ୍ — ଓଡ଼ିଶା ରାଜ୍ୟ ଗଠନ । ପାରଳାଖେମୁଣ୍ଡି ତାଲୁକାକୁ ନେଇ କୋରାପୁଟ ଜିଲ୍ଲା ସୃଷ୍ଟି ।

ଖ୍ରୀଷ୍ଟାବ୍ଦ ୧୯୩୬ — ନଭେମ୍ବର — ପାରଳାଖେମୁଣ୍ଡି ତାଲୁକା ଗଞ୍ଜାମ ଜିଲ୍ଲାର ଅନ୍ତର୍ଭୁକ୍ତ ହେଲା ।

ଖ୍ରୀଷ୍ଟାବ୍ଦ ୧୯୩୮ — ଗୁଣୁପୁରରେ ଭୟଙ୍କର ବନ୍ୟା ଓ ବୈପାରିଗୁଡା ଅଞ୍ଚଳରେ ପରୀକ୍ଷାମୂଳକ ସର୍ଭେ କାର୍ଯ୍ୟ ଆରମ୍ଭ ।

ଖ୍ରୀଷ୍ଟାବ୍ଦ ୧୯୪୧ — ନବରଙ୍ଗପୁର ସବ୍‌ଡ଼ିଭିଜନ ସୃଷ୍ଟି ।

ଖ୍ରୀଷ୍ଟାବ୍ଦ ୧୯୪୨ — ବସନ୍ତ ରୋଗର ବ୍ୟାପକ ସଂକ୍ରମଣ ଜନିତ ବହୁ ଜୀବନ କ୍ଷୟ ।

ଖ୍ରୀଷ୍ଟାବ୍ଦ ୧୯୪୨ — ମାଥିଲି ଓ ପାପଡାହାଣ୍ଡିରେ ପୋଲିସର ଗୁଳିଗୋଳା । ମାଥିଲିରେ ଛଅ ଜଣ ସ୍ଥଳେ ପାପଡାହାଣ୍ଡିରେ ୧୯ ଜଣ ମୃତ୍ୟୁ ବରଣ କଲେ । ୫୪ ଜଣ କଂଗ୍ରେସ କର୍ମୀଙ୍କ ସହ ଲକ୍ଷ୍ମଣ ନାୟକଙ୍କୁ ବିଚାରାଧୀନ ବନ୍ଦୀ ରୂପେ ରଖାଗଲା ।

ଖ୍ରୀଷ୍ଟାବ୍ଦ ୧୯୪୩ — ବ୍ରହ୍ମପୁର ସେଣ୍ଟ୍ରାଲ ଜେଲରେ ୨୯. ୩. ୧୯୪୩ ଦିନ ଲକ୍ଷ୍ମଣ ନାୟକଙ୍କୁ ଫାଶୀ ଦିଆଗଲା ।

ଖ୍ରୀଷ୍ଟାବ୍ଦ ୧୯୪୫ — ବ୍ୟାପକ ହଇଜା ଓ ଶସ୍ୟ ହାନି ।

ଖ୍ରୀଷ୍ଟାବ୍ଦ ୧୯୪୬ — ମାଛକୁଣ୍ଡ ଜଳ ବିଦ୍ୟୁତ ପ୍ରକଳ୍ପର ଶୁଭାରମ୍ଭ ।

ଖ୍ରୀଷ୍ଟାବ୍ଦ ୧୯୪୭ — ଜୟପୁରଠାରେ ଜିଲ୍ଲାର ସର୍ବପ୍ରଥମ କଲେଜ ବିକ୍ରମଦେବ କଲେଜ ସ୍ଥାପିତ । ସର୍ଭେ ଓ ଜମିଜମା ବନ୍ଦୋବସ୍ତ କାର୍ଯ୍ୟ ଆରମ୍ଭ ।

ଖ୍ରୀଷ୍ଟାବ୍ଦ ୧୯୪୯ — ଇନ୍ଦ୍ରାବତୀ ଓ କୋଲାବ ନଦୀରେ ବନ୍ୟା ହେତୁ ବିପୁଳ ଶସ୍ୟହାନି ଓ ହଇଜା ରୋଗରେ ବହୁ ଲୋକଙ୍କ ମୃତ୍ୟୁ । ତାଲୁକ୍ ବୋର୍ଡକୁ ଭାଙ୍ଗି ଦିଆଗଲା ।

ଖ୍ରୀଷ୍ଟାବ୍ଦ ୧୯୫୨ — ଜମିଦାରୀ ଉଚ୍ଛେଦ । ଜୟପୁରରେ ଜମିଦାରୀ ଶାସନର ଅବସାନ ।

ଖ୍ରୀଷ୍ଟାବ୍ଦ ୧୯୫୩ — ସାଧାରଣ ସିଭିଲ ଓ କ୍ରିମିନାଲ ଆଇନ ଓ ଶାସନର ପ୍ରବର୍ତ୍ତନ । ନୂତନ ଅଞ୍ଚଳ ଗଠନ ।

ଖ୍ରୀଷ୍ଟାବ୍ଦ ୧୯୫୨-୫୪ — ଇନାମ ଇଷ୍ଟେଟ ଉଚ୍ଛେଦ ।

ଖ୍ରୀଷ୍ଟାବ୍ଦ ୧୯୫୫ — ମୁସ୍ତାଦାରୀ ପ୍ରଥା ବିଲୋପ ।

ଖ୍ରୀଷ୍ଟାବ୍ଦ ୧୯୫୬ — ପ୍ରଳୟଙ୍କରୀ ବନ୍ୟାରେ ବହୁ ଧନ, ଜୀବନ ଓ ଶସ୍ୟ ହାନି ।

ଖ୍ରୀଷ୍ଟାବ୍ଦ ୧୯୫୭ — ଅଞ୍ଚଳ ଓ ଅଞ୍ଚଳ ଅଧିକାରୀମାନଙ୍କୁ ଯଥାକ୍ରମେ ତହସିଲ ଓ ତହସିଲ୍‌ଦାର ନାମରେ ନାମିତ କରାଗଲା ।

ଖ୍ରୀଷ୍ଟାବ୍ଦ ୧୯୫୮ — ଦଣ୍ଡକାରଣ୍ୟ ଯୋଜନାର ଆରମ୍ଭ ।

ଖ୍ରୀଷ୍ଟାବ୍ଦ ୧୯୫୯ — ତହସିଲ ଗୁଡ଼ିକର ପୁନର୍ଗଠନ ।

ଖ୍ରୀଷ୍ଟାବ୍ଦ ୧୯୬୨ — ଗୁଣୁପୁର ଓ ମାଲକାନଗିରି ସବ୍‌ଡିଭିଜନର ସୃଷ୍ଟି । କୋଟପାଡ ଓ ମୋଟୁ ତହସିଲ ଗଠନ । କାଶିପୁର ତହସିଲ କୋରାପୁଟ ଜିଲ୍ଲା ସହିତ ସାମିଲ ।

ଖ୍ରୀଷ୍ଟାବ୍ଦ ୧୯୬୪ — ବିଶାଖାପାଟ୍ଟଣାରୁ କିରଣ୍ଡୋଲ ପର୍ଯ୍ୟନ୍ତ ଡ଼. ବ. କେ ରେଳ ରାସ୍ତା ନିର୍ମାଣ କାର୍ଯ୍ୟ ଆରମ୍ଭ ।

ଖ୍ରୀଷ୍ଟାବ୍ଦ ୧୯୬୬ — ଜୟପୁର ସବ୍‌ ଡ଼ିଭିଜନ ସୃଷ୍ଟି ।

ଖ୍ରୀଷ୍ଟାବ୍ଦ ୧୯୬୯ — ସୁନାବେଡ଼ା ଠାରେ ହିନ୍ଦୁସ୍ଥାନ ଏରୋନାଟିକସ ଲିମିଟେଡ ପ୍ରତିଷ୍ଠା ।

ଖ୍ରୀଷ୍ଟାବ୍ଦ ୧୯୭୨ — କୋରାପୁଟରେ ଶ୍ରୀଜଗନ୍ନାଥଙ୍କ ଆବିର୍ଭାବ ଓ ଶବର ଶ୍ରୀକ୍ଷେତ୍ର ପ୍ରତିଷ୍ଠା ।

ଖ୍ରୀଷ୍ଟାବ୍ଦ ୧୯୭୩ — ବାଲିମେଳା ବନ୍ଧ ପ୍ରକଳ୍ପ ଆରମ୍ଭ ।

ଖ୍ରୀଷ୍ଟାବ୍ଦ ୧୯୭୪ — ମାଛକୁଣ୍ଡ ତହସିଲ୍ ଗଠନ ।

ଖ୍ରୀଷ୍ଟାବ୍ଦ ୧୯୭୫ — ଅପର କୋଲାବ ପ୍ରକଳ୍ପ ଆରମ୍ଭ ।

ଖ୍ରୀଷ୍ଟାବ୍ଦ ୧୯୭୮ — କୋଡ଼ିଙ୍ଗା ତହସିଲ ସୃଷ୍ଟି । ଶବର ଶ୍ରୀକ୍ଷେତ୍ରରେ ନବନିର୍ମିତ ଶ୍ରୀମନ୍ଦିର ପ୍ରତିଷ୍ଠା ଉତ୍ସବ ଏବଂ ଗଜପତି ମହାରାଜା ଶ୍ରୀ ଶ୍ରୀ ଦିବ୍ୟସିଂହ ଦେବଙ୍କ ଉପସ୍ଥିତିରେ ଚତୁର୍ଦ୍ଧା ମୂର୍ତ୍ତିଙ୍କ ରତ୍ନସିଂହାସନ ବିଜେ ।

ଖ୍ରୀଷ୍ଟାବ୍ଦ ୧୯୭୮-୭୯ - ଅପର ଇନ୍ଦ୍ରାବତୀ ନଦୀବନ୍ଧ ଯୋଜନାର ଶୁଭାରମ୍ଭ ।

ଖ୍ରୀଷ୍ଟାବ୍ଦ ୧୯୮୦ — ବଂଶଧାରା ନଦୀରେ ପ୍ରଳୟଙ୍କରୀ ବନ୍ୟା ।

ଖ୍ରୀଷ୍ଟାବ୍ଦ ୧୯୮୨ — ଶବର ଶ୍ରୀକ୍ଷେତ୍ରରେ ଶ୍ରୀ ଶ୍ରୀ ଶବରେଶ୍ୱର ମହାଦେବଙ୍କ ମନ୍ଦିର ପ୍ରତିଷ୍ଠା ଉତ୍ସବ ।

ଖ୍ରୀଷ୍ଟାବ୍ଦ ୧୯୮୩ — ଚନ୍ଦକୋଣ୍ଡା ଓ ଡ଼ାଙ୍ଗୁଲା ତଉସିଲ ସୃଷ୍ଟି ।

ଖ୍ରୀଷ୍ଟାବ୍ଦ ୧୯୮୬ — ଦାମନଯୋଡଠାରେ ନ୍ୟାସନାଲ ଅଲୁମିନିୟମ କମ୍ପାନୀର (ନାଲକୋ) କାର୍ଯ୍ୟାରମ୍ଭ ।

ଖ୍ରୀଷ୍ଟାବ୍ଦ ୧୯୮୮ — କୋରାପୁଟରୁ ରାୟଗଡ଼ା ପର୍ଯ୍ୟନ୍ତ ରେଳରାସ୍ତା ନିର୍ମାଣ କାର୍ଯ୍ୟ ଆରମ୍ଭ । ଶାବର ଶ୍ରୀକ୍ଷେତ୍ରରେ ଚାରିଧାମ ଦେବତା ମାନଙ୍କର ପ୍ରତିଷ୍ଠା ଉତ୍ସବ ସମାରୋହ । ଅପର କୋଲାବ ପ୍ରୋଜେକ୍ଟର ଅବସାନ ।

ଖ୍ରୀଷ୍ଟାବ୍ଦ ୧୯୯୦ — ଶାବର ଶ୍ରୀକ୍ଷେତ୍ରର ଭଗବତ ଟୀକାର ଅତିବଡ଼ ଜଗନ୍ନାଥ ଦାସଙ୍କର ପଞ୍ଚଶତତମ ଜୟନ୍ତୀ ଅବସରରେ ଅତିବଡ଼ଙ୍କ ଦାରୁ ମୂର୍ତ୍ତି ପ୍ରତିଷ୍ଠା ।

ଖ୍ରୀଷ୍ଟାବ୍ଦ ୧୯୯୧ — କୋରାପୁଟସ୍ଥ ଆଦିବାସୀ ଦେବୀ କଣାଶୁଣୀ ମାଙ୍କ ପୀଠରେ ଶାବରୋତ୍ସବ ପାଳନର ଆରମ୍ଭ ।

ଖ୍ରୀଷ୍ଟାବ୍ଦ ୧୯୯୨ — ଜାନୁୟାରୀ ୨୬ ତାରିଖ ଦିନ କୋରାପୁଟରେ ଆଦିବାସୀ ସଂଗ୍ରହାଳୟର ଉନ୍ମୋଚନ । ଅକ୍ଟୋବର ୨ ତାରିଖ ଗାନ୍ଧୀ ଜୟନ୍ତୀ ଦିନ କୋରାପୁଟ ଜିଲ୍ଲାକୁ କୋରାପୁଟ, ନବରଙ୍ଗପୁର, ମାଲକାନଗିରି ଓ ରାୟଗଡ଼ା ୪ଟି ଜିଲ୍ଲାରେ ବିଭାଜନ କରାଗଲା ।

ଖ୍ରୀଷ୍ଟାବ୍ଦ ୧୯୯୩ — ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁପଟ୍ଟନାୟକଙ୍କ ଦ୍ୱାରା ଜାନୁୟାରୀ ୯ ତାରିଖ ଦିନ କୋରାପୁଟ ଠାରେ କୋଟସ (ପ୍ରୟୋଗାତ୍ମକ ଆଦିବାସୀ ଗବେଷଣା କେନ୍ଦ୍ର) ଉନ୍ମୋଚିତ ।

ଖ୍ରୀଷ୍ଟାବ୍ଦ ୧୯୯୪ — କୋଟସ ପରିସରରେ ଓଡ଼ିଶାର ଜଙ୍ଗଲମହଲ ଓ ଆଦିବାସୀ ଉନ୍ନୟନ ଆଲୋଚନା ଚକ୍ର ।

ଖ୍ରୀଷ୍ଟାବ୍ଦ ୧୯୯୫ — ରାଜ୍ୟସ୍ତରୀୟ ବିଦ୍ୟାଳୟ ସମୂହର ବିଜ୍ଞାନ ପ୍ରଦର୍ଶନୀ । ନିଖିଳ ଉତ୍କଳ ଶ୍ରୀଅରବିନ୍ଦ ମହିଳା ପାଠଚକ୍ର । କୋରାପୁଟରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଦ୍ୱାରା ଆଦିବାସୀ ମେଳା 'ଡଙ୍ଗର ୯୫' ଉତ୍ସବର ଉଦ୍‌ଘାଟନ ।

ଡିସେମ୍ବର ୩୦ ତାରିଖରେ କୋରାପୁଟ-ରାୟଗଡ଼ା ରେଳପଥରେ ରେଳ ଚଳାଚଳ ଆରମ୍ଭ ।



(ଶ୍ରୀ ଜଗନ୍ନାଥ ସରଫ୍‌ଙ୍କ ଦ୍ୱାରା ସଂଗୃହିତ)

## ପରିଶିଷ୍ଟ-'ଖ'

# କୋରାପୁଟର ସଂକ୍ଷିପ୍ତ ଭୌଗୋଳିକ ବିବରଣୀ

I ଅବସ୍ଥିତି :

ଅବିଭକ୍ତ କୋରାପୁଟ 17°-50" ଓ 20°-3" ଉତ୍ତର ଅକ୍ଷାଂଶ ମଧ୍ୟରେ ଏବଂ 81°-27" ଓ 84°-1" ପୂର୍ବ ଦ୍ରାଘିମା ମଧ୍ୟରେ ଅବସ୍ଥିତ ।

II ଚତୁଃସୀମା :

ପୂର୍ବରେ-ଗଂଜାମ, କନ୍ଧମାଳ ଏବଂ ଆନ୍ଧ୍ରର ଶ୍ରୀକାକୁଳମ୍ ଓ ବିଜୟ-ନଗରମ୍ ଜିଲ୍ଲା
ପଶ୍ଚିମରେ-ମଧ୍ୟପ୍ରଦେଶର ବସ୍ତର
ଉତ୍ତରରେ କଳାହାଣ୍ଡି ଏବଂ ମଧ୍ୟପ୍ରଦେଶର ରାଇପୁର
ଦକ୍ଷିଣରେ ଆନ୍ଧ୍ରର ଖାମାମ୍, ପୂର୍ବ ଗୋଦାବରୀ ଓ ବିଶାଖପାଟଣା

III ଆୟତନ :

10,4୨8.୬5 ବର୍ଗ ମାଇଲ ।

IV ପ୍ରାକୃତିକ ଗଠନ :

ଏ ଅଞ୍ଚଳର ଭୂପ୍ରକୃତି ବୈଚିତ୍ର୍ୟପୂର୍ଣ୍ଣ । ପୂର୍ବଘାଟ ପର୍ବତମାଳାର କ୍ଷୁଦ୍ର ବୃହତ ଅସଂଖ୍ୟ ପର୍ବତ ଶୃଙ୍ଗ, ଉପତ୍ୟକା, ନଦୀ ଅବବାହିକା ଏହି ଅଞ୍ଚଳରେ ଅବସ୍ଥିତ । ଏହାର ଦକ୍ଷିଣ ପ୍ରାନ୍ତରେ ଅବସ୍ଥିତ ମୋଟୁ ଅଞ୍ଚଳ ସମୁଦ୍ର ପତନ ଠାରୁ 150 ଫୁଟ ଉଚ୍ଚ ଥିବାବେଳେ ଏହାର କେନ୍ଦ୍ରାଞ୍ଚଳରେ ଅବସ୍ଥିତ ଦେଓମାଳି ପର୍ବତ ସମୁଦ୍ର ପତନ ଠାରୁ 5486 ଫୁଟ ଉଚ୍ଚତା ବିଶିଷ୍ଟ । ଭାରତର ପ୍ରାପ୍ୟ ସମସ୍ତ ପ୍ରକାର ଭୂମିରୂପ ଓ ପ୍ରାକୃତିକ ପରିବେଶ ଏ ଅଞ୍ଚଳରେ ଦେଖାଯାଏ । ଏହାକୁ ମୁଖ୍ୟତଃ ଚାରୋଟି ପ୍ରାକୃତିକ ବିଭାଗରେ ବିଭକ୍ତ କରାଯାଏ ।

**(କ) ପୂର୍ବାଞ୍ଚଳ**-ସମୁଦ୍ର ପତନ ଠାରୁ 250 ରୁ 1,300 ଫୁଟ ଉଚ୍ଚତା ବିଶିଷ୍ଟ ଏହି ଅଞ୍ଚଳକୁ ନେଇ ରାୟଗଡ଼ା ଓ ଗୁଣପୁର ସବ୍‌ଡିଭିଜନ (ସଂପ୍ରତି ଜିଲ୍ଲା) ଗଠିତ । ବଂଶଧାରା ଓ ନାଗାବଳୀ ନଦୀଦ୍ୱୟର ଅବବାହିକା ଏହାର ଅଧିକାଂଶ ଅଞ୍ଚଳ ଅଧିକାର କରିଛି । କୈଳାସ-କୋଟା ପର୍ବତ ଏହି ନଦୀଦ୍ୱୟ ମଧ୍ୟରେ ଜଳ ବିଭାଜିକା ରୂପେ ରହିଛି । ଉତ୍ତର ପୂର୍ବ କୋଣର ଗୁଣପୁର ଅଞ୍ଚଳରେ

ଅବସ୍ଥିତ ପୃଥ୍ବୀସିଙ୍ଗି ପର୍ବତମାଳା ଲଞ୍ଜିଆ ସଉରାଙ୍କ ବାସସ୍ଥଳୀ । ରାୟଗଡ଼ା ଓ ଗୁଣପୁର ସବ୍‌ଡିଭିଜନ୍ ଦ୍ୱୟର ସୀମାରେ ଅବସ୍ଥିତ ନିୟମଗିରି ପର୍ବତ-ମାଳାରେ ଡଙ୍ଗରିଆ କନ୍ଧମାନେ ବସବାସ କରନ୍ତି ।

**(ଖ) ଉଚ୍ଚ ପାର୍ବତ୍ୟାଞ୍ଚଳ :** ପ୍ରାୟ 3000 ଫୁଟ ଓ ତଦୁର୍ଦ୍ଧ୍ୱ ଉଚ୍ଚତା ବିଶିଷ୍ଟ ଏହି ଭୂମି କାଶିପୁର ଅଞ୍ଚଳରୁ ଆରମ୍ଭ ହୋଇ ଅନ୍ଧ୍ର ପ୍ରଦେଶରେ ପୂର୍ବ ଗୋଦାବରୀ ଯାଏ ଲମ୍ବିଛି । ପ୍ରାୟ 110 ମାଇଲ ଦୈର୍ଘ୍ୟ ଓ 40 ମାଇଲ ପ୍ରସ୍ଥ ବିଶିଷ୍ଟ ଏହି ଉଚ୍ଚ ମାଳଭୂମି କୋରାପୁଟକୁ ପ୍ରକୃତିର ଅବଦାନ । କୋରାପୁଟ ସବ୍‌ଡିଭିଜନ୍‌ଟି ପ୍ରାୟତଃ ଏହି ମାଳଭୂମିରେ ଅବସ୍ଥିତ । କୁବିକନ୍ଧ ଗଦବା, ପାରେଙ୍ଗା ପରଜାମାନେ ଏ ଅଞ୍ଚଳରେ ମୁଖ୍ୟତଃ ବସବାସ କରନ୍ତି । ପଟାଙ୍ଗୀ ନିକଟସ୍ଥ 5,486 ଫୁଟ ଉଚ୍ଚତା ବିଶିଷ୍ଟ ଦେଓମାଳି ପର୍ବତ ଓଡ଼ିଶାର ଉଚ୍ଚତମ ଶିଖର । ଏହା ପୂର୍ବଘାଟ ପର୍ବତ ଶ୍ରେଣୀରେ ଉଚ୍ଚତମ ଶୃଙ୍ଗ । ଶାବର ଶ୍ରୀକ୍ଷେତ୍ରସ୍ଥ ଶ୍ରୀଜଗନ୍ନାଥ ମନ୍ଦିରର ଦୋଳବେଦୀରେ ଠିଆ ହୋଇ ପୂର୍ବ ଦିଗକୁ ଦୃଷ୍ଟି ପକାଇଲେ ଇଂରେଜ M ଅକ୍ଷର ପରି ଦୁଇ ଶିଖର ବିଶିଷ୍ଟ ଏହି ପର୍ବତ ଖାଲି ଆଖିରେ ଦେଖାଯାଏ । ଏ ଅଞ୍ଚଳରେ ପ୍ରବାହିତ କୋଲାବ ନଦୀରେ ନିର୍ମିତ କୋଲାବ ଜଳ ଭଣ୍ଡାର ସାରା ଦେଶରେ ଅଦ୍ୱିତୀୟ । ସମୁଦ୍ର ପତ୍ତନ ଠାରୁ 3000 ଫୁଟ ଉଚ୍ଚରେ ଅବସ୍ଥିତ ଏହି କୃତ୍ରିମ ହ୍ରଦ କାଶ୍ମୀରର ଡାଲ ହ୍ରଦ ସହ ତୁଳନୀୟ । ଏହାକୁ ଏକ ପର୍ଯ୍ୟଟନ ସ୍ଥଳୀର ରୂପ ଦିଆଯାଇ ପାରେ । ହ୍ରଦ ମଧ୍ୟରେ ଅସଂଖ୍ୟ ଟାପୁ, ପାହାଡ଼ ଏବଂ ହ୍ରଦର ଉପର ଦେଇ ଯାଇଥିବା ପୃଥିବୀର ଉଚ୍ଚତମ ବ୍ରଡ଼ଗଜ୍ ରେଳଲାଇନ୍ ଏ ଅଞ୍ଚଳକୁ ସ୍ୱପ୍ନପୁରୀର ରୂପ ଦିଏ ।

ଇନ୍ଦ୍ରାବତୀ, କୋଲାବ ଓ ମାଛକୁଣ୍ଡ ନଦୀ ଏ ଅଞ୍ଚଳରେ ପ୍ରବାହିତ । କୋଲାବ ନଦୀ ପାଡୁଆ ନିକଟରୁ ବାହାରି ଗୁପ୍ତେଶ୍ୱର ନିକଟରୁ ଶବରୀ ନାମ ଧାରଣ କରି ମୋଟୁ ନିକଟରେ ଗୋଦାବରୀ ନଦୀରେ ମିଶିଛି । ମାଛକୁଣ୍ଡ ନଦୀ କୋଣ୍ଡାକାମ୍ବେରୁ ପୂର୍ବରୁ ସିଲେରୁ ନାମ ଧାରଣ କରି ମୋଟୁ ନିକଟରେ ଗୋଦାବରୀରେ ମିଶିଛି । ଏହି ତ୍ରିବେଣୀ ସଙ୍ଗମ ସ୍ଥଳୀର ଶୋଭା ଅତ୍ୟନ୍ତ ରମଣୀୟ । ଏହା ଓଡ଼ିଶାର ଦକ୍ଷିଣ ପ୍ରାନ୍ତ ବିନ୍ଦୁ । ଏହି ବିନ୍ଦୁ ଓଡ଼ିଶା, ଆନ୍ଧ୍ର ପ୍ରଦେଶ ଓ ମଧ୍ୟ ପ୍ରଦେଶର ସଙ୍ଗମ ସ୍ଥଳୀ । ଏଠାରେ ସଂପ୍ରତି ଏକ ଶ୍ରୀଜଗନ୍ନାଥ ମନ୍ଦିର ନିର୍ମିତ ହୋଇଛି । ଗୋଦାବରୀର ଏହି ତ୍ରିବେଣୀ ସଙ୍ଗମ ସ୍ଥଳୀ

ବାସ୍ତବରେ ଅପରୂପ ଶୋଭାର ସ୍ଥଳୀ । ଏହି ପୁଣ୍ୟସ୍ଥଳୀ ପ୍ରତି ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିବାର ବାସ୍ତବତା ସରକାରଙ୍କ ଦୃଷ୍ଟିକୁ ଆସିନଥିବା ପରିତାପର ବିଷୟ ।

(ଗ) **ଅନୁଚ୍ଚ ପାର୍ବତ୍ୟ ଭୂମି** : ଏହି ଅଞ୍ଚଳ ପ୍ରାୟ 2000 ଫୁଟ ଯାଏ ଉଚ୍ଚତା ବିଶିଷ୍ଟ । ଜୟପୁର ସବ୍‌ଡ଼ିଭିଜନ୍‌ର କିଛି ଅଞ୍ଚଳ ଓ ସମଗ୍ର ନବରଙ୍ଗପୁର ସବ୍‌ଡ଼ିଭିଜନ୍ (ବର୍ତ୍ତମାନ ଜିଲ୍ଲା) ଏହି ଅଞ୍ଚଳର ଅନ୍ତର୍ଭୁକ୍ତ । ଅଧିକାଂଶ ଅଞ୍ଚଳରେ ଏହା ପ୍ରାୟ ସମତଳ । କିନ୍ତୁ ସ୍ଥାନେ ସ୍ଥାନେ ଅନୁଚ୍ଚ ପାହାଡ଼ ମାନ ରହିଛି । ଏହି ଅଞ୍ଚଳ ମୁଖ୍ୟତଃ ଭତ୍ରା, ଗଣ୍ଡିଆ, ପରଜା ଓ ଅନ୍ୟାନ୍ୟ ଆଦିବାସୀଙ୍କ ବାସଭୂମି । ଏଠାରେ ଶାଳ, ପିଆଶାଳ ବୃକ୍ଷର ଜଙ୍ଗଲ ରହିଛି । ଏ ଅଞ୍ଚଳରୁ ପ୍ରାୟ ହଜାରେ ଫୁଟ ତଳକୁ ଖସିଲେ, ପଶ୍ଚିମରେ କଳାହାଣ୍ଡି ଓ ପୂର୍ବରେ ମାଲକାନଗିରି ଅଞ୍ଚଳ ।

(ଘ) **ଦକ୍ଷିଣାଞ୍ଚଳ** : ଏହା ପ୍ରାୟ ସମତଳ । ମୁଖ୍ୟତଃ ମାଲକାନଗିରି ଅଞ୍ଚଳ ଏହାର ଅନ୍ତର୍ଭୁକ୍ତ । ବଣ୍ଡା ଓ ଦିଦାୟୀ ଜାତିର ଆଦିବାସୀ କେବଳ ଏହି ଅଞ୍ଚଳରେ ହିଁ ବାସ କରନ୍ତି । କୋୟା ଜାତି ଓଡ଼ିଶା ଓ ଆନ୍ଧ୍ର ଅଞ୍ଚଳରେ ଭାଗ ହୋଇ ରହିଛନ୍ତି । ପରଜା ଓ ଅନ୍ୟ ଜାତିଙ୍କ ସଂଖ୍ୟା ନଗଣ୍ୟ । କୋୟା ଭାଷା ଦ୍ରାବିଡ଼ ଗୋଷ୍ଠୀର । ଉଭୟ ଆନ୍ଧ୍ର ଓ ଓଡ଼ିଶାରେ କୋୟାଙ୍କ ଜନବସତି । ଏ ଅଞ୍ଚଳ ସମ୍ବେଦନଶୀଳ । ଏହି ଅଞ୍ଚଳର ଉତ୍ତର ମୁଣ୍ଡରେ ଗୋବିନ୍ଦପାଲ୍ଲୀ ସମୁଦ୍ର ପତ୍ତନ ଠାରୁ 800 ଫୁଟ ଉଚ୍ଚ ହୋଇଥିବାସ୍ଥଳେ ମୋଟୁ ନିକଟରେ ଏହା 150 ଫୁଟରୁ ବି କମ୍ । ବର୍ଷା କାଳରେ ଏ ଅଞ୍ଚଳ ବନ୍ୟା ପ୍ଲାବିତ ହୁଏ ଏବଂ ବନ୍ୟାଜଳ ସହଜରେ ନିଷ୍କାସିତ ହୋଇ ପାରେ ନାହିଁ । ଏ ଅଞ୍ଚଳ ସବୁବେଳେ ସନ୍ତସନ୍ତିଆ । ଏ ଅଞ୍ଚଳରେ ଖୁବ୍ ଶୀଘ୍ର ଗ୍ରୀଷ୍ମଋତୁ ଆରମ୍ଭ ହୋଇଯାଏ ଏବଂ ଏହି ଋତୁରେ ଅତିମାତ୍ରାରେ ଗରମ ଅନୁଭୂତ ହୁଏ । ଏହି ସମତଳ ଅଞ୍ଚଳରେ ସ୍ଥାନେ ସ୍ଥାନେ ଅନୁଚ୍ଚ ପାହାଡ଼ ଦେଖାଯାଏ । ଶରଣାର୍ଥୀଙ୍କ ଥଇଥାନ ପାଇଁ କେନ୍ଦ୍ର ସରକାରଙ୍କ ଦଣ୍ଡକାରଣ୍ୟ ଯୋଜନା ଓ ବାଲିମେଳା ନଦୀବନ୍ଧ ଯୋଜନା ଏ ଅଞ୍ଚଳର ମୂଲ୍ୟବାନ୍ ଅରଣ୍ୟ ସମ୍ପଦ ନଷ୍ଟ କରି ଦେଇଛି । କାଠ ଓ ବାଉଁଶ ପାଇଁ ଏ ଅଞ୍ଚଳ ପ୍ରସିଦ୍ଧ ।

[ଆଦିବାସୀ ସଂଗ୍ରହାଳୟ, କୋରାପୁଟ ଦ୍ୱାରା ପ୍ରସ୍ତୁତ]

●

**ପରିଶିଷ୍ଟ 'ଗ'**

# କୋରାପୁଟ ଅଞ୍ଚଳରେ ଆଦିବାସୀ ବସତି

(୧୯୯୧ ଜନଗଣନା ଅନୁଯାୟୀ)

| ବ୍ଲକର ନାମ | (ମୁଖ୍ୟ ଆଦିବାସୀ ଗୋଷ୍ଠୀ) | ମୋଟ ଜନସଂଖ୍ୟା | ଆଦିବାସୀଙ୍କ ସଂଖ୍ୟା |
|---|---|---|---|
| **କୋରାପୁଟ ଜିଲ୍ଲା—** | | | |
| **କୋରାପୁଟ ସବ୍ ଡିଭିଜନ** | | | |
| ୧. କୋରାପୁଟ ବ୍ଲକ— | * ପରଜା * କନ୍ଧ | 56,740 | 23,212 |
| ୨. ସେମିଳିଗୁଡ଼ା ବ୍ଲକ— | * ପରଜା * କନ୍ଧ * ଗାଦବା | 49,081 | 26,550 |
| ୩. ପଟାଙ୍ଗୀ ବ୍ଲକ— | * କନ୍ଧ * ପରଜା * ଗାଦବା | 52,799 | 37,574 |
| ୪. ଲକ୍ଷ୍ମୀପୁର ବ୍ଲକ— | * କନ୍ଧ * ପରଜା | 49,301 | 33,925 |
| ୫. ନନ୍ଦପୁର ବ୍ଲକ— | * କନ୍ଧ * ପରଜା * କୋଟିଆ | 73,890 | 39,930 |
| ୬. ବନ୍ଧୁଗାଁ ବ୍ଲକ— | * କନ୍ଧ | 42,954 | 33,345 |
| ୭. ନାରାୟଣ ପାଟଣା ବ୍ଲକ— | * କନ୍ଧ | 32,835 | 26,806 |
| ୮. ଲମତାପୁଟ ବ୍ଲକ— | * କନ୍ଧ * ପରଜା * ଗାଦବା | 46,628 | 21,770 |
| ୯. ଦଶମନ୍ତପୁର ବ୍ଲକ— | * କନ୍ଧ * ପରଜା | 61,528 | 34,610 |
| **ଜୟପୁର ସବ୍ ଡିଭିଜନ** | | | |
| ୧. ଜୟପୁର ବ୍ଲକ— | * ପରଜା * ଗଦବା * ଭୂମିଆ | 83,747 | 41,811 |

୨. ବୈପାରୀଗୁଡା ବ୍ଲକ—

| | | |
|---|---|---|
| * ଭୂମିଆ * ପରଜା * ଧୁରୁଆ | 75,254 | 45,215 |

୩. କୋଟପାଡ ବ୍ଲକ—

| | | |
|---|---|---|
| * ଭତ୍ରା * ଧୁରୁଆ | 69,551 | 42,540 |

୪. କୁନ୍ଦ୍ରା ବ୍ଲକ—

| | | |
|---|---|---|
| * ଭତ୍ରା * କନ୍ଧ * ପରଜା * ଭୂମିଆ | 52,181 | 26,198 |

୫. ବରିଗୁମ୍ମା ବ୍ଲକ —

| | | |
|---|---|---|
| * ପରଜା * ଭତ୍ରା * ଅମାନତ୍ୟ | 1,13,983 | 58,135 |

# ମାଲକାନଗିରି ଜିଲ୍ଲା

## ମାଲକାନଗିରି ସବ୍ ଡିଭିଜନ

୧. ମାଲକାନଗିରି ବ୍ଲକ—

| | | |
|---|---|---|
| * ଧୁରୁଆ * କୋୟା | 48,618 | 34,048 |
| * ମାଡ଼ିଆ * ପରଜା | | |

୨. କୋରକୋଣ୍ଡା ବ୍ଲକ—

| | | |
|---|---|---|
| * କୋୟା * ସାନ୍ତାଳ | 88,219 | 47,068 |

୩. ଖଇରପୁଟ ବ୍ଲକ—

| | | |
|---|---|---|
| * ବଣ୍ଡା * ପରଜା | 27,321 | 19,863 |
| * ଗାଦ୍‌ବା * କନ୍ଧ | | |

୪. ପାଡୁଆ ବ୍ଲକ—

| | | |
|---|---|---|
| * କୋୟା * ବଣ୍ଡା * କୋମର | 38,459 | 25,145 |
| * ଧୁରୁଆ * ହାଲବା | | |

୫. କୁଡୁମୁଲୁଗୁମ୍ମା ବ୍ଲକ—

| | | |
|---|---|---|
| * ପରଜା * କନ୍ଧ * ଦିଦାୟୀ | 40,699 | 30,956 |

୬. କାଲିମେଲା ବ୍ଲକ—

| | | |
|---|---|---|
| * କୋୟା * କନ୍ଧ | 83,992 | 35,664 |
| * ହାଲବା * ଦୋର | | |

୭. ମାତ୍ତିଲ ବ୍ଲକ—

| | | |
|---|---|---|
| * ଭୂମିଆ * କୋୟା | 66,162 | 49,585 |

# ନବରଙ୍ଗପୁର ଜିଲ୍ଲା

## ନବରଙ୍ଗପୁର ସବ୍ ଡିଭିଜନ

୨. ନବରଙ୍ଗପୁର ବ୍ଲକ—
* ଭତ୍ରା * ପରଜା * ଧରୁଆ 57,914 33,538

୨. ଉମରକୋଟ ବ୍ଲକ—
* ଭତ୍ରା 1,01,854 63,257

୩. ତେନ୍ତୁଳଖୁଣ୍ଟି ବ୍ଲକ—
* ପରଜା * ଭତ୍ରା * ଧରୁଆ 68,189 29,207

୪. ଚନ୍ଦାହାଣ୍ଡି ବ୍ଲକ—
* ଗଣ୍ଡ * ଭୁଞ୍ଜିଆ * ବନଜାର 51,937 17,492

୫, କୋସାଗୁମୁଡା ବ୍ଲକ—
* ଭତ୍ରା 1,17,731 74,907

୬, ପାପଡାହାଣ୍ଡି ବ୍ଲକ—
* ଭତ୍ରା * ପରଜା * ହାଲବା 95,768 56,307

୭, ଝରିଗାଁ ବ୍ଲକ—
* ଭତ୍ରା * ପରଜା * ଗଣ୍ଡ * କନ୍ଧ 95,920 59,344

୮, ଡ଼ାବୁଗାଁ ବ୍ଲକ—
* ଭତ୍ରା * ପରଜା 46,095 27,371

୯, ରାୟଘର ବ୍ଲକ—
* ଗଣ୍ଡ * ହାଲବା * ବନଜାର 1,25,244 80,797

୧୦, ନନ୍ଦାହାଣ୍ଡି ବ୍ଲକ—
* ଭତ୍ରା * ପରଜା * ଅମାନତ୍ୟ 43,890 20,784

# ରାୟଗଡା ଜିଲ୍ଲା

## ରାୟଗଡା ସବ୍ ଡିଭିଜନ

୧, ରାୟଗଡା ବ୍ଲକ—
*କନ୍ଧ * ଜାତାପୁ ଦୋର 96,107 61,695

୨, କାଶିପୁର ବ୍ଲକ —
* କନ୍ଧ * ପରଜା 1, 01,995 62, 742

୩, କୋଲନଗ ବ୍ଲକ--
* କନ୍ଧ 59,309 40, 775

୪, କଲ୍ୟାଣ ସିଙ୍ଗପୁର ବ୍ଲକ---
* କନ୍ଧ 50, 807 32, 105

## ଗୁଣପୁର ସବଡିଭିଜନ୍

୧. ଗୁଣପୁର ବ୍ଲକ —
* କନ୍ଧ * ସଉରା * ଧରୁଆ 54, 237 38, 501

୨. ଗୁଡାରୀ ବ୍ଲକ —
* କନ୍ଧ *ସଉରା * ଜାତାପୁ 30. 120 22, 552

୩. ବିଷମକଟକ ବ୍ଲକ—
* କନ୍ଧ 73, 276 45, 579

୪. ଚନ୍ଦ୍ରପୁର ବ୍ଲକ —
* କନ୍ଧ 25, 947 18, 188

୫. ମୁନିଗୁଡା ବ୍ଲକ —
* କନ୍ଧ 65, 032 21, 195

୬. ରାମନାଗୁଡ଼ା ବ୍ଲକ —
* ସଉରା * ଜାତାପୁ * କନ୍ଧ * ଧରୁଆ 42, 259 27, 336

୭. ପଦ୍ମପୁର ବ୍ଲକ —
* ସଉରା * କନ୍ଧ * ଜାତାପୁ 41, 720 19, 533

[ଆଦିବାସୀ ସଂଗ୍ରହାଳୟ, କୋରାପୁଟ ଦ୍ୱାରା ପ୍ରସ୍ତୁତ]



## ପରିଶିଷ୍ଟ 'ଘ'    'ଜୟପୁର' ପୁସ୍ତକ ଉପରେ ଟିପ୍ପଣୀ

(ତୃତୀୟ ପରିଚ୍ଛେଦ ଯାଏ ଫୁଟ୍ ନୋଟ୍ ଘଳେ ଦିଆଯାଇଛି)

ପୃ–55 ଅନୁଚ୍ଛେଦ–2—ଜୟପୁର ରାଜ୍ୟ ନଅ ଗୋଟି ତାଲୁକ ଓ ଚଉଦ ଗୋଟି ପରଗଣାରେ ବିଭକ୍ତ ଥିଲା । ଏବର ପ୍ରଶାସନିକ ବିଭାଗର ବିବରଣୀ ପରିଶିଷ୍ଟ–'ଙ' ରେ ଦିଆଯାଇଛି ।

ପୃ–58 ନଂ–4— ହରିହର ମିଶ୍ର : ବଉଦ ରାଜ୍ୟର ଜଣେ ସ୍ୱାଧୀନଚେତା ବିପ୍ଳବୀ । ସେଠାରେ ପ୍ରଜା ମେଳିର ନେତୃତ୍ୱ ନେଇ ରାଜ୍ୟରୁ ବିତାଡ଼ିତ ହୋଇ ଜୟପୁରରେ ଆତ୍ମଗୋପନ କରିଥିଲେ । ତାଙ୍କ ହୃଦୟରେ ଜାତୀୟ ସ୍ୱାଭିମାନର ସ୍ଫୁଲିଙ୍ଗ ପରେ ଜୟପୁର ଅଞ୍ଚଳରେ ଓଡ଼ିଆ ଚେତନା ଜାଗ୍ରତ କରିଥିଲା । ଜୟପୁରରେ ସେ ବହୁ ଅତ୍ୟାଚାର ଶିକାର ହୋଇଥିଲେହେଁ ମହାରାଜା ବିକ୍ରମଦେବ ବର୍ମାଙ୍କୁ ସହାୟତା କରି ଜୟପୁର ଜମିଦାରୀକୁ ଓଡ଼ିଶାରେ ମିଶାଇବା ପାଇଁ ଉଦ୍ୟମ ଅବ୍ୟାହତ ରଖିଥିଲେ । ତାଙ୍କ ସମ୍ପାଦନାରେ ଜୟପୁର ବିକ୍ରମ ପ୍ରେସରୁ 'ପ୍ରଜାବାଣୀ' ନାମକ ପତ୍ରିକା ପ୍ରକାଶ ପାଉଥିଲା ।

ପୃ–60 ନଂ–5—ନଉପଡା ପାରଳାଖେମୁଣ୍ଡି ଶାଖା ରେଳପଥକୁ 1931 ମସିହାରେ ଗୁଣପୁର ଯାଏ ବଢାଯାଇଥିଲା । 1932 ରେ ରାୟଗଡା ଅଞ୍ଚଳ ଦେଇ ଯାଇଥିବା ବିଜୟନଗରମ୍ ରାୟପୁର ରେଲ ଲାଇନରେ ରେଲ ଚଳାଚଳ ଆରମ୍ଭ ହୋଇଥିଲା । କୋରାପୁଟ ଅଞ୍ଚଳ ଦେଇ ମଧ୍ୟପ୍ରଦେଶର ବାଇଲାଡ଼ିଲାରୁ ଅନ୍ଧ୍ରର କଟାବାଲସା ଯାଏ 1967 ମସିହାରେ ରେଲ ଗଲିଲା ଏବଂ କୋରାପୁଟ ଠାରୁ କାଶିପୁର ଦେଇ ଯାଇଥିବା ନବ ନିର୍ମିତ ରେଲ ଲାଇନରେ ଆସନ୍ତା 1995 ଡ଼ିସେମ୍ବର 30ରୁ ରେଲଗାଡ଼ି ଚଳାଚଳ ଆରମ୍ଭ ହେବ ।

ପୃ–74 ଅନୁଚ୍ଛେଦ-1—ଜୟପୁର/ନନ୍ଦପୁର ରାଜବଂଶର ପ୍ରଥମ ରାଜା ବିନାୟକ ଦେବ କାଶ୍ମୀରରୁ ଆସି 1443 ରେ ନନ୍ଦପୁର ରାଜ୍ୟ ଭାର ଗ୍ରହଣ ପ୍ରସଙ୍ଗ ଉପରେ ଜର୍ମାନ ଗବେଷକ Burkhard Schnepel ଭିନ୍ନ ମତ ପ୍ରକାଶ କରନ୍ତି । ଏହା 1993 The Orissa Historical Research Journal ରେ ପ୍ରକାଶିତ ।

ପୃ-81 ଅନୁଚ୍ଛେଦ–2—1922 ରୁ 1924 ମଧ୍ୟରେ ଆନ୍ଧ୍ର ପ୍ରଦେଶର ଶହୀଦ ଆଲୁରୁ ସୀତାରାମ ରାଜୁଙ୍କ ନେତୃତ୍ୱରେ ଇଂରେଜ ସରକାର ବିରୋଧୀ ବିଦ୍ରୋହୀଙ୍କୁ 'ଫିତୁରୀ ବୀର' କୁହାଯାଏ । 'ଫିତୁରୀ' ଶବ୍ଦର ଅର୍ଥ 'ବିଦ୍ରୋହ' ।

ପୃ–238 ଅନୁଚ୍ଛେଦ-3—1934 ନଭେମ୍ବର 22 ତାରିଖରେ ଜଏଣ୍ଟ ପାର୍ଲିଆମେଣ୍ଟରୀ କମିଟିର ରିପୋର୍ଟ ପ୍ରକାଶ ପାଇଥିଲା ଏବଂ ଏଥିରେ ଜୟପୁର ଅଞ୍ଚଳକୁ ଓଡ଼ିଶାରେ ଅନ୍ତର୍ଭୁକ୍ତ କରିବା ପାଇଁ ସୁପାରିଶ କରାଯିବା ଫଳରେହିଁ 1936 ରେ ନବ ଗଠିତ ଓଡ଼ିଶା ପ୍ରଦେଶରେ ଏ ଅଞ୍ଚଳ ମିଶି ପାରିଲା । ଏଣୁ ନଭେମ୍ବର 22 ତାରିଖଟି ଉତ୍କଳ ଇତିହାସରେ ସ୍ମରଣୀୟ ଶୁଭଦିବସ ବୋଲି କବି ଶେଖରଙ୍କ ମନ୍ତବ୍ୟ ପ୍ରଣିଧାନ ଯୋଗ୍ୟ ।

ପରିଶିଷ୍ଟ-'ଙ'

# ୧୯୯୪ ରେ କୋରାପୁଟ ଅଞ୍ଚଳର ପରିସଂଖ୍ୟାନ ବିବରଣୀ

| ତଥ୍ୟ | କୋରାପୁଟ ଜିଲ୍ଲା | ମାଲକାନଗିରି ଜିଲ୍ଲା | ନବରଙ୍ଗପୁର ଜିଲ୍ଲା | ରାୟଗଡ଼ା ଜିଲ୍ଲା | ଅବିଭକ୍ତ କୋରାପୁଟ ଜିଲ୍ଲା | ଓଡ଼ିଶା |
|---|---|---|---|---|---|---|
| ୧ | ୨ | ୩ | ୪ | ୫ | ୬ | ୭ |
| **ପ୍ରଶାସନିକ ତଥ୍ୟ-** | | | | | | |
| କ୍ଷେତ୍ରଫଳ ବର୍ଗ କି.ମି | ୮,୩୭୯.୩ | ୬,୧୧୫.୩ | ୫,୨୯୦.୧ | ୭,୫୮୪.୭ | ୨୭,୩୬୯.୪ | ୧,୫୫୭.୦୭ |
| ii ସବଡ଼ିଭିଜନ୍ | ୨ | ୧ | ୧ | ୨ | ୬ | ୫୮ |
| iii ତହସିଲ | ୬ | ୩ | ୪ | ୪ | ୧୭ | ୧୪୭ |
| iv ପୋଲିସ୍ ଷ୍ଟେସନ | ୨୦ | ୮ | ୧୦ | ୧୨ | ୫୦ | ୪୨୪ |
| v ବ୍ଲକ | ୧୪ | ୭ | ୧୦ | ୧୧ | ୪୨ | ୩୧୪ |
| vi ଗ୍ରାମପଞ୍ଚାୟତ | ୧୯୭ | ୭୭ | ୧୪୮ | ୧୪୦ | ୫୬୨ | ୫୨୬୩ |
| vii ଗ୍ରାମ | ୧,୯୯୭ | ୯୨୮ | ୮୯୭ | ୨,୬୬୭ | ୬,୪୮୯ | ୫୧,୦୫୭ |
| viii ସହରାଞ୍ଚଳ | ୫ | ୩ | ୨ | ୪ | ୧୪ | ୧୨୩ |
| ix ଲୋକସଭା ସ୍ଥାନ | ୧ | ୧ | ୧ | ୧ | ୨ | ୨୧ |
| x ବିଧାନସଭା ସ୍ଥାନ | ୪ | ୨ | ୪ | ୪ | ୧୪ | ୧୪୭ |

| ୧ | ୨ | ୩ | ୪ | ୫ | ୬ | ୭ |
|---|---|---|---|---|---|---|
| **ଲୋକ ସଂଖ୍ୟା–** | | | | | | |
| (୧୯୯୧-ଜନଗଣନା ଅନୁଯାୟୀ) | | | | | | |
| i ପୁରୁଷ | ୫,୧୭,୨୭୪ | ୨,୧୨,୫୭୬ | ୪,୨୫,୭୫୯ | ୩,୫୪,୯୧୧ | ୧୫,୧୦,୫୨୦ | ୧,୬୦,୬୪,୧୪୬ |
| ii ସ୍ତ୍ରୀ | ୫,୧୨,୭୧୨ | ୨,୦୯,୩୪୧ | ୪,୨୦,୯୦୦ | ୩,୫୯,୦୭୩ | ୧୫,୦୨,୦୨୬ | ୧,୫୫,୯୫,୫୯୦ |
| iii ମୋଟ | ୧୦,୨୯,୯୮୬ | ୪,୨୧,୯୧୭ | ୮,୪୬.୬୫୯ | ୭,୧୩,୯୮୪ | ୩୦,୧୨,୫୪୬ | ୩,୧୬,୫୯,୭୩୬ |
| iv ଗ୍ରାମାଞ୍ଚଳ | ୮,୫୮,୨୮୧ | ୩,୮୭,୪୮୯ | ୮,୦୪,୫୪୨ | ୬.୨୪,୬୫୮ | ୨୬,୭୪,୯୭୦ | ୨,୭୪,୨୪,୭୫୩ |
| v ସହରାଞ୍ଚଳ | ୧,୭୧,୭୦୫ | ୩୪,୪୨୮ | ୪୨,୧୧୭ | ୮୯,୩୨୬ | ୩,୩୭,୫୭୬ | ୪୨,୩୪,୯୮୩ |
| vi ହରିଜନ | ୧,୩୮,୧୬୯ | ୮୪,୨୦୮ | ୧,୨୭,୮୦୦ | ୧,୦୧,୯୫୬ | ୪,୫୨,୧୩୩ | ୫୧,୨୯,୩୧୪ |
| vii ଆଦିବାସୀ | ୫,୨୧,୮୪୯ | ୨,୪୬,୨୧୪ | ୪,୬୭;୯୧୯ | ୪,୦୦,୦୯୭ | ୧୬,୩୬,୦୭୯ | ୭୦;୩୨,୨୧୪ |
| ରାଜ୍ୟର ଲୋକ ସଂଖ୍ୟା ତୁଳନାରେ ଜିଲ୍ଲାର ଲୋକ ସଂଖ୍ୟା (ଶତକଡ଼ା ହାରରେ) | ୩.୨୫% | ୧.୩୩% | ୨.୬୮% | ୨.୨୬% | ୯.୫୨% | ୧୦୦ |
| ସାକ୍ଷରତା ହାର (୧୯୯୧)– | ୨୪.୬୪ | ୨୦.୦୪ | ୧୮.୬୨ | ୨୬.୧୦ | ୧୮.୪୨ | ୪୯.୦୯ |
| i ପୁରୁଷ | ୨୯.୪୨ | ୨୮.୨୨ | ୨୮.୧୦ | ୩୬.୫୩ | ୨୬.୧୭ | ୫୨.୪୧ |

| ୧ | ୨ | ୩ | ୪ | ୫ | ୬ | ୭ |
|---|---|---|---|---|---|---|
| ii ମହ୍ଲା | ୧୫.୧୫ | ୧୧.୬୯ | ୯.୧୦ | ୧୪.୬୩ | ୧୦.୬୨ | ୨୮.୮୩ |
| iv ଜଙ୍ଗଲ ଅଂଚଳ (ବର୍ଗ କିଲୋମିଟରରେ) | ୧,୮୩୪.୧୫ | ୧,୬୨୯.୨୫ | ୧,୫୮୪.୧୩ | ୪,୦୦୮.୦୯ | ୯,୦୫୫.୬୨ | ୫୨,୯୪୦.୩୩ |
| v ୧୯୯୩ ମସିହାରେ ବୃଷ୍ଟିପାତ (ମିଲିମିଟରରେ) | ୧,୨୯୨.୫ | ୧,୧୮୯.୧ | ୧,୩୨୭.୦ | ୧,୦୩୭.୭ | — | — |
| vi ମୋଟ ଚାଷ ହୋଇଥିବା ଜମି ୧୯୯୨-୯୩ ରେ (ହେକ୍ଟରରେ) | ୨,୯୪,୫୩୦ | ୧,୪୭,୯୭୦ | ୨,୩୭,୩୦୦ | ୧,୪୯,୮୧୦ | ୮,୩୯,୬୧୦ | ୫୭,୩୮,୮୮୦ |
| **ଶିକ୍ଷା—** (୧୯୯୨-୯୩ ର ସଂଖ୍ୟା) | | | | | | |
| **ପ୍ରାଥମିକ ବିଦ୍ୟାଳୟ** | | | | | | |
| ୧) ସ୍କୁଲ ସଂଖ୍ୟା | ୧,୬୩୯ | ୮୦୭ | ୧,୦୩୪ | ୧,୩୩୩ | ୪,୮୧୩ | ୩୬,୫୪୨ |
| ୨) ନାମ ଲେଖାଇଥିବା ଛାତ୍ରଛାତ୍ରୀ ସଂଖ୍ୟା | ୭୬,୦୫୩ | ୪୭,୬୨୯ | ୬୮,୧୭୨ | ୬୫,୧୫୮ | ୨,୫୭,୦୧୨ | ୫୦,୫୩,୫୩୧ |
| ୩) ଏକ ଲକ୍ଷ ଲୋକଙ୍କ ପାଇଁ ସ୍କୁଲ ସଂଖ୍ୟା | ୧୭୭ | ୨୬୦ | ୧୫୭ | ୧୯୫ | ୧୫୯ | ୧୧୨ |

| ୧ | ୨ | ୩ | ୪ | ୫ | ୬ | ୭ |
|---|---|---|---|---|---|---|
| **ମଧ୍ୟଇଂରାଜୀ ବିଦ୍ୟାଳୟ** | | | | | | |
| ୧) ସ୍କୁଲ ସଂଖ୍ୟା | ୧୯୧ | ୭୭ | ୧୪୩ | ୧୪୭ | ୫୫୮ | ୯୮୫୭ |
| ୨) ନାମ ଲେଖାଇଥିବା ଛାତ୍ର ଛାତ୍ରୀ ସଂଖ୍ୟା | ୩୨,୯୩୨ | ୭,୭୩୨ | ୧୭,୫୨୪ | ୧୧,୭୧୨ | ୬୯,୯୦୦ | ୧୦,୧୧,୧୫୯ |
| ୩) ଏକ ଲକ୍ଷ ଲୋକଙ୍କ ପାଇଁ ସ୍କୁଲ ସଂଖ୍ୟା | ୬୧ | ୩୬ | ୨୫ | ୩୨ | ୧୮ | ୩୧ |
| **ଉଚ୍ଚ ଇଂରାଜୀ ବିଦ୍ୟାଳୟ–** | | | | | | |
| ୧) ସ୍କୁଲ ସଂଖ୍ୟା | ୬୧ | ୩୧ | ୬୦ | ୫୩ | ୨୨୫ | ୫୨୨୭ |
| ୨) ନାମ ଲେଖାଇଥିବା ଛାତ୍ର ଛାତ୍ରୀ ସଂଖ୍ୟା | ୧୫,୫୨୦ | ୫,୫୨୨ | ୮,୯୯୧ | ୧୧,୭୩୩ | ୪୧,୬୬୬ | ୯,୧୯,୭୧୦ |
| ୩) ଏକ ଲକ୍ଷ ଲୋକଙ୍କ ପାଇଁ ସ୍କୁଲ ସଂଖ୍ୟା | ୭ | ୮ | ୫ | ୮ | ୭ | ୧୭ |
| **ମହାବିଦ୍ୟାଳୟ–** | | | | | | |
| ୧) ମହାବିଦ୍ୟାଳୟ ସଂଖ୍ୟା | ୧୫ | ୪ | ୫ | ୧୧ | ୩୫ | ୬୪୮ |
| ୨) ନାମଲେଖାଇଥିବା ଛାତ୍ର ଛାତ୍ରୀ ସଂଖ୍ୟା | ୮,୭୧୯ | ୧,୨୬୯ | ୨,୨୮୪ | ୩,୮୨୩ | ୧୬,୦୯୫ | ୪୦,୨୨,୦୯୪ |

(COATS, କୋରାପୁଟ ଦ୍ୱାରା ସଂଗୃହୀତ)